ଜୀବଜନ୍ତୁଙ୍କ କଉତୁକ—୨

# ମାଙ୍କଡ଼ର ଦେଶଭ୍ରମଣ

ଲେଖକ :

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ :

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ-୨

# ମାଙ୍କଡ଼ର ଦେଶଭ୍ରମଣ

ଲେଖକ :
**ଶ୍ରୀ ଉଦୟନାଥ ଷଡ଼ଙ୍ଗୀ**

ପ୍ରକାଶକ :
**କଟକ ଟ୍ରେଡ଼ିଂ କମ୍ପାନୀ**
ବାଲୁବଜାର, କଟକ-୨

ନୂତନ ସଂସ୍କରଣ !
**୧୯୯୧**

ମୁଦ୍ରଣ :
**ଆନନ୍ଦ ପ୍ରିଣ୍ଟିଂଓ୍ୱାର୍କସ**
ତେଲଙ୍ଗାବଜାର,- କଟକ ୯

**ମୂଲ୍ୟ——ଦଶଟଙ୍କା**

# ମାଙ୍କଡ଼ର ଦେଶଭ୍ରମଣ

ସେ ଏଭଳି ଗୋଟିଏ ଦେଶ ଯେ, ସେ ଦେଶରେ ମାଙ୍କଡ଼ ଜମା ନ ଥାନ୍ତି । ଗାଈ ଗୋରୁ, ଘୋଡ଼ା ହାତୀ, ବିଲେଇ କୁକୁର ଅଛନ୍ତି; ବଣରେ ବାଘ ସିଂହ ବି ଅଛନ୍ତି । କିନ୍ତୁ ମାଙ୍କଡ଼ ଦେଖିବାକୁ ସାତସପନ । ଆମ ଦେଶଭଳି ମଣିଷ ଅଛନ୍ତି, ମଣିଷ ପିଲା ବି ଅଛନ୍ତି । ସେମାନେ ପାଠ ପଢନ୍ତି, ଖେଳନ୍ତି, ବୁଲନ୍ତି । କେତେରକମର ଜୀବଜନ୍ତୁ ପୋଷନ୍ତି ।

ସେ ଦେଶ ରାଜାଙ୍କର ଜୀବଜନ୍ତୁ ପୋଷିବାରେ ବଡ଼ ସଉକ । ସେ ଗୋଟିଏ ଚିଡ଼ିଆଖାନା କରିଥାଆନ୍ତି । ସେପରି କିଛି ବଡ଼ ଚିଡିଆଖାନା ନୁହେଁ—ନିହାତି ଛୋଟଧରଣର ପଶୁଶାଳାଟିଏ । ସେଥିରେ ଗୋଟାଏ ବୁଢା ବାଘ, ଦୁଇଟା କୁମ୍ଭୀର, ତିନିଟା ସାପ, ଆଉ କେତୁଟା ଭିନ୍ନ ଭିନ୍ନ ଜନ୍ତୁ ପୋଷାଯାଇଥିଲେ । ମୂଷା, ବେଙ୍ଗ, ଚୁଚୁନ୍ଦ୍ରା ପ୍ରଭୃତି କେତେଗୁଡ଼ାଏ ଜୀବ ବି ଥିଲେ । ସେଇଠି ଥିଲା ଗୋଟାଏ ମାଙ୍କଡ଼ । ତାକୁ ଦେଖିବାପାଇଁ ଦେଶର ସବୁ ଅଞ୍ଚଳର ଲୋକ ସହରକୁ ଆସନ୍ତି । ଘଣ୍ଟାଘଣ୍ଟା ଧରି ତା ପାଖରେ ଠିଆହୋଇ ତାକୁ ଦେଖନ୍ତି; ଆମ୍ବ, କଦଳୀ, ନାସପାତି ଖାଇବାକୁ ଦିଅନ୍ତି ।

କେହି କହେ ସେ ଗୋଟାଏ ପଶୁ । କେହି କହେ, ନା, ବଣମଣିଷ । ଠିକ୍ ମଣିଷ ପରି—କେବଳ ଗୋଟାଏ ଛୋଟଲାଞ୍ଜ ଯାହା ଅଧିକା ରହିଛି । ଦେହଯାକ ବାଳ ସାଲୁବାଲୁ । ମଣିଷ ତ ନର; ଏ ବାଳୁଆ ନର । କେହି କହେ—ଠିକ୍ ଠିକ୍, ବାନର ।



—ଏକ—

ମାଙ୍କଡ଼ଟି ଦୁଇବର୍ଷ ହେଲା ଏଠାକୁ ଆସିଛି । ସେ ବଗୃହ ଦଶହଜାର ମାଇଲ ଦୂରରେ ଭାରତବର୍ଷର କୌଣସି ଗୋଟିଏ ବଣରେ ଜନ୍ମ ହୋଇ-ଥିଲା ।ପିଲାଟିବେଳୁ ମା ପିଠିରେ ଲେପଟେଇ ପଡ଼ି କେତେ ଗଛରୁ ଗଛ ଡେଇଁଛି । ବଣରେ କେତେ ଫଳ ପତର ଖାଇଛି; ପୋଖରୀ, ନାଳ, ଝରଣାରୁ ପାଣି ପିଇଛି ।

କ୍ରମେ ସେ ବଡ଼ ହେଲା । ମା ତାକୁ ଛାଡି କୁଆଡ଼େ ଚାଲିଗଲା । ତା ଦଳର ବଡ଼ବଡ଼ିଆ କେହି ବି ପାଖରେ ରହିଲେ ନାହିଁ । ସେ ତା ସାଙ୍ଗସାଥୀ କେତେଜଣଙ୍କୁ ଧରି ନୂଆ ଦଳ ଗଢ଼ିଲା । ବଣ ଜଙ୍ଗଲରେ ଡ଼େଇଁ କୁଦି ଖେଳିବୁଲି ସମୟ କଟାଇଲା ।

କିଛିଦିନ ପରେ ସେ ବଣ ଆଉ ତାକୁ ଭଲ ଲାଗିଲା ନାହିଁ । ସେଇ ଗୋଟିଏ ବଣ ଏକାଭଳି ଗଛବୁଦା, ଏକାପ୍ରକାର ଖାଇବାଜିନିଷ । ଏଥିରେ ବା ସେ କେତେଦିନ ସନ୍ତୁଷ୍ଟ ହୁଅନ୍ତା ? ତା ମନ ଚାହିଁଲା କିଛି ନୂଆକଥା ।

ସେ ସାଙ୍ଗମାନଙ୍କୁ କହିଲା, "ଆଉ ଏ ବଣରେ ରହିବା ନାହିଁ । ଚାଲ, ଆଉ କୁଆଡ଼େ ଯିବା ।" ଏ କଥାରେ କେତେକ ରାଜି ହେଲେ, କେତେକ ରାଜି ହେଲେ ନାହିଁ ।

ଯେଉଁମାନେ ତା କଥାରେ ରାଜି ହେଲେ, ସେମାନଙ୍କୁ ସାଙ୍ଗରେ ଧରି ସେ ବଣ ଛାଡ଼ି ବାହାରିପଡ଼ିଲା ।

ବଣପରେ ବଣ, ନଈ ନାଳ, ପାହାଡ଼ ପର୍ବତ କେତେ କଅଣ ସେ ଦେଖିଲା । ଯେତେ ନୂଆନୂଆ କଥା ଦେଖୁଥାଏ, ତା ମନ ସେତେ କୁଣ୍ଢେ-ମୋଟ ହୋଇଯାଉଥାଏ । ମନଖୁସିରେ ସେ ଆଗକୁ ଆଗକୁ ଚାଲିଥାଏ ।

କେତେ ବାଟ ଆସିଲା ପରେ ନିଘଞ୍ଚ ବଣ ସରିଗଲା । ପଦା ଜାଗା; କାଁ ଭାଁ କେଉଁଠି ଗୋଟାଏ ଗୋଟାଏ ଗଛ ଥାଏ । ସେଠାରେ ସେ ଆଉ ଅନେକ ରକମର ପଶୁ ଦେଖିଲା । ସବୁଠାରୁ ତାକୁ ଭଲ ଲାଗିଲା ଗୋଟାଏ ଅଦ୍ଭୁତ ରକମର ପଶୁ । ସେ ପଶୁ ଠିକ୍ ତା'ରି ପରି । ତା'ରି ମୁହଁ ପରି ମୁହଁ, ଆଖି, କାନ, ନାକ । କିନ୍ତୁ ସେ ସବୁବେଳେ ଦୁଇଟା ଗୋଡ଼ରେ ଚାଲୁଛି । ତା'ର ପଛ ଆଡ଼େ ଲାଙ୍ଗୁଡ଼ ନାହିଁ କି ଦେହରେ ବାଳ ନାହିଁ ।

ସେ ଶୁଣିଲା, ଏହି ପଶୁକୁ ନର କହନ୍ତି । ମନରେ ଭାବିଲା, ଠିକ୍

ଠିକ୍, ଆମ ସାନଭାଇ । ଆମେ ତ ବଡ଼ଭାଇ—ତେଣୁ ଆମେ ବାନର, ସେ ସାନ ବୋଲି ତା' ନାମ ଆଗରୁ 'ବା' ଟି କଟି ଯାଇଛି; ସେ ହୋଇଛି 'ନର' ।

ମାଙ୍କଡ଼ଟି ପୁଣି ଭାବିଲା, ଆମ ସାନଭାଇ ଯେତେବେଳେ, ନିଶ୍ଚୟ ଆମକୁ ଆଦର ଯତ୍ନ କରିବେ । ଖାଇବାକୁ ଡାକିବେ, ରହିବାକୁ ଜାଗା ଦେବେ । ବଡ଼ବଡ଼ିଆଙ୍କୁ କିଏ ବା ଖାତିର ନ କରେ ?

ପ୍ରକୃତରେ ଏତେ ବାଟ ଆସି ଆସି ସେ ବଡ଼ କ୍ଲାନ୍ତ ହୋଇ ପଡ଼ିଥିଲା । ତା' ସାଙ୍ଗସାଥୀମାନେ ଚାହୁଁଥିଲେ ଟିକିଏ ବିଶ୍ରାମ । କେତେକ ମଧ୍ୟ ତା' ଉପରେ ଚିଡ଼ିଚିଡ଼ି ହେଉଥିଲେ । କେହି କେହି ବିରକ୍ତ ହୋଇ ଅଧ ବାଟରେ ବି ରହି ଯାଇଛନ୍ତି ।

ସେ ସାଙ୍ଗସାଥୀଙ୍କୁ ଧରି କେତେ ଥର ଗଛରୁ ଓହ୍ଲାଇ ତଳକୁ ଆସିଲା । ଯେଉଁଠି ନରଙ୍କୁ ଦେଖିଲା, ତାଙ୍କ ପାଖକୁ ଗଲା । କିନ୍ତୁ କି ଆଶ୍ଚର୍ଯ୍ୟ ! କେହି ତ ତାକୁ ନିମନ୍ତ୍ରଣ କଲେ ନାହିଁ, ଟିକିଏ ପାଖକୁ ବି ଡାକିଲେ ନାହିଁ । ବରଂ ତାକୁ ବା ତା' ସାଙ୍ଗସାଥୀଙ୍କୁ ଦେଖି କେହି ଡରି ପଳାଇଗଲା । ଆଉ କିଏ ଢେଲା ଫିଙ୍ଗିଲା; କିଏ ବାଡି ଧରି ମାରି ଗୋଡ଼ାଇଲା । କିଏ କହିଲା 'ତୁ ତୁ, ଧ ଧ' ।

ଏ ଦେଶରେ କଅଣ ବଡ଼ଭାଇଙ୍କୁ ଏହିପରି ଆଦର କରନ୍ତି ? ଏମାନଙ୍କ ମାନମହତ କଅଣ ଏଇଭଳି ?

ସେ ମନେକଲା, ପ୍ରକୃତରେ ଏମାନଙ୍କର ଏ ପର୍ଯ୍ୟନ୍ତ ବୁଦ୍ଧି ହୋଇ ନାହିଁ । ଲାଙ୍ଗୁଡ଼ ତ ଉଠି ନାହିଁ, ବୁଦ୍ଧି ହେବ କିପରି ? ବୁଦ୍ଧି ଭଣ୍ଡାର ଯେ ଲାଙ୍ଗୁଡ଼ ମୂଳରେ । ଏମାନେ ଆଉ ବଡ଼ ହେଲେ, ଏମାନଙ୍କର ଲାଙ୍ଗୁଡ଼ ଉଠିଲେ, ଏମାନେ ବୁଦ୍ଧିଆ ହେବେ । ସେତେବେଳେ ଯାଇ

ବଡ଼ଭାଇଙ୍କୁ ଆଦର ଯତ୍ନ କରିବେ । ତା' ହେଲେ ଏଠାରେ ସେହି ସମୟ ଯାଏ ଅପେକ୍ଷା କରି ରହିବା ଦରକାର ।

ତା' ସାଙ୍ଗସାଥୀଙ୍କୁ ଧରି ସେହି ଗ୍ରାମରେ ହିଁ ସେ ରହିଗଲା ।



—ଦୁଇ—

ମାଙ୍କଡ଼ଟି ଦେଖିଲା, ଗ୍ରାମ ଚାରିପାଖରେ କେତେଗୁଡ଼ିଏ ଆମ୍ବ ତୋଟା । ଗାଁ ମଝିରେ କେତେ ବାଡ଼ି ବଗିଚା । ବଗିଚାରେ କଦଳୀ, ପିଜୁଳି, ଆମ୍ବ ଆଦି ଗଛରେ କେତେ ଫଳ ଓହଳିଛି । ଘରର ଚାଳ ଉପରେ ଲାଉ,

କଖାରୁ ଥୁଆ ହୋଇଛି । ଏସବୁ ତ କେବଳ ତାହାର ପାଇଁ । ସେ ଯଦି ଏ ଜାଗା ଛାଡ଼ି ଚାଲିଯିବ, ତେବେ ଏ ସୁନ୍ଦର ଫଳଗୁଡ଼ିକ ହେବ କଅଣ ? ଅକାରଣରେ ନଷ୍ଟ ହୋଇଯିବ ସିନା !

ସେ ତା' ସାଙ୍ଗସାଥୀଙ୍କୁ ଡାକି ବୁଝାଇ ଦେଲା—"ଶୁଁ ଇଁ, ଚାଁ ଆଁ । ଆମେ ଭାବୁଥିଲେ, ଆମ ସାନ ଭାଇଙ୍କର ବୁଦ୍ଧି ହୋଇ ନାହିଁ । କିନ୍ତୁ ତା' ନୁହେଁ । ତାଙ୍କର ଅଳ୍ପ ଅଳ୍ପ ବୁଦ୍ଧି ଅଛି । ଆମକୁ ସେମାନେ ଖାତିର୍ କରନ୍ତି, ଭକ୍ତି କରନ୍ତି । ତେଣୁ ଏତେ ପ୍ରକାରର ଫଳ ଆମ ପାଇଁ ଯତ୍ନରେ ସାଇତି ରଖିଛନ୍ତି । ଆମେ ଏହାକୁ ନ ଖାଇଲେ, ସେମାନଙ୍କ ମନରେ କଷ୍ଟ ହେବ । ସାନଭାଇ ମନରେ ଦୁଃଖ ଦେବା କଅଣ ଉଚିତ ? ଚାଲ, ଏସବୁ ଫଳ ଆନନ୍ଦରେ ଖାଇବା ।"

ଫଳ ଦେଖି ମାଙ୍କଡ଼ଙ୍କ ପାଟିରୁ ପାଣି ବୋହୁଥିଲା । ସର୍ଦ୍ଦାର କଥା ସେମାନଙ୍କ ମନକୁ ପାଇଗଲା । ଯାହାର ଯେଉଁ ଗଛରେ ଇଚ୍ଛା, ସେ ଗଛକୁ ସେ ଚଢ଼ିଗଲା । ଗଛ ଡାଳରେ କେତେ ନାଚିଲା, କୁଦିଲା । ମନ ବୋଧ କରି ଫଳ ଖାଇଲା ।

ସର୍ଦ୍ଦାର ଗୋଟିଏ ଚାଳ ଉପରକୁ ଉଠିଯାଇ କେତେ କୁଦ ହେଲା । ତା' ପରେ ଗୋଟିଏ କଖାରୁ କଷି ଆଣି କାମୁଡ଼ି ଖାଇଲା ।

ଗୁଡ଼ାଏ ପିଲା ତାକୁ ଦେଖିଲେ; ଜୋର୍‌ରେ ପାଟି କରି ଉଠିଲେ— ଧୋ, ଧୋ ।

ସର୍ଦ୍ଦାର ତାଙ୍କୁ ଚାହିଁଲା । ପିଲାମାନେ ଦାନ୍ତ ଦେଖାଇ ତାକୁ ଖତାଇ ହେଲେ ।

ମାଙ୍କଡ଼ ଭାବିଲା, ମନୁଷ୍ୟମାନେ ବୋଧହୁଏ ଏହିପରି ବଡ଼ଭାଇଙ୍କୁ ଭକ୍ତି କରନ୍ତି । ଏ ଦେଶର ଏହିପରି କାଇଦା । ସେ ଉତ୍ତର ନ ଦେଲେ, ତାକୁ କହିବେ ମୂର୍ଖ, ବୋକା ।

ତେଣୁ ସେ ବି ପିଲାଙ୍କ ପରି ଦାନ୍ତ ଦେଖାଇଦେଲା । କହିଲା "ଖେଁକର ଖେଁ, ଖେଁ ।"



ପିଲାମାନେ ତା ଦାନ୍ତ ଦେଖି, ତା ଶବ୍ଦ ଶୁଣି ଡରିଗଲେ । ସେ ତାଙ୍କୁ ଟିକିଏ ଗେଲ କରିବ ବୋଲି ଚାଳରୁ ଓହ୍ଲାଇ ଆସୁଥିଲା । ପିଲାମାନେ ଭୟରେ ପଳାଇଗଲେ । ସେତେବେଳେ ଜୋରରେ ପାଟି କରୁଥାଆନ୍ତି—ମାଙ୍କଡ, ମାଙ୍କଡ ।

ମାଙ୍କଡ଼ ଭାବିଲା, "ଏମାନେ ଏତେ ପାଟି କରୁଛନ୍ତି । ଆମେ ତ କାହିଁ ଏପରି ପାଟି କରୁ ନାହିଁ ।"

ଏହି ସମୟରେ ଦଳେ ଲୋକ ବାଡ଼ି ଠେଙ୍ଗା ଧରି ଦଉଡ଼ିଆସିଲେ । ସେମାନଙ୍କ ପାଟିରେ ସେ ଜାଗା କମ୍ପିଗଲା । କିଏ ତା ଉପରକୁ ଢେଲା ପକାଇଲା । କିଏ ବା ନିଆଁ ହୁଲା ଦେଖାଇଲା । ଆଉ କିଏ ଗୋଟାଏ ଟିଣ ଢୋ ଢୋ କରି ପିଟିଲା ।

ମାଙ୍କଡ଼ ଦେଖିଲା, ପିଲାଙ୍କର ଯାହା ଖେଳ, ତାହାର ତାହା ବିପଦ । ତେଣୁ ସେ ଡେଇଁ ଡେଇଁ ପିଢ଼ାଉପରୁ ଚାଲିଗଲା । ଗୋଟାଏ ଝଙ୍କାଳିଆ ବରଗଛର ପତ୍ରଗହଳରେ ଲୁଚି ବସିଲା ।

ସେଦିନ ଗଲା । ପରଦିନ ପୁଣି ସେ ସାନଭାଇମାନଙ୍କୁ ସଙ୍ଗେ ନେଇ ଖେଳିବାକୁ ଆସିଲା । କାଲିର କଖାରୁ ଖାଇ ମନ ଲାଗିଯାଇଛି । ନ ଆସନ୍ତା କିପରି ?

ଟାଳଉପରେ ବସିଦେଇ ମନ ଖୁସିକରି ସେ ଖାଇଲା । ତଳକୁ ଚାହିଁଲା, କେହି କୁଆଡ଼େ ନାହାନ୍ତି । ଭାବିଲା, ଭାଇମାନେ ଗଲେ କୁଆଡ଼େ ?

ତାଙ୍କୁ ଦେଖିବାପାଇଁ ସେ ତଳକୁ ଓହ୍ଲାଇଆସିଲା । ତଳେ ମନୁଷ୍ୟ ତ କେହି ନ ଥିଲେ; ଥିଲା ଗୋଟାଏ ଛୋଟକାଠଘର । ତା ଚାରିପାଖରେ ଲୁହାଜାଲି ଦିଆ ଯାଇଥାଏ । ଭିତରକୁ ଯିବାପାଇଁ କେବଳ ଗୋଟିଏ ବାଟ ।

ମାଙ୍କଡ଼ ଉଙ୍କିମାରି ଦେଖିଲା, ସେ ଘରଭିତରେ ଦୁଇଟା କଦଳୀ ଥୁଆ ହୋଇଛି; କାକୁଡ଼ିକଷି ବି ଗୋଟାଏ ।

ତା ମନ ହାଇଁପାଇଁ ହେଲା । କଦଳୀ ଆଉ କାକୁଡ଼ି ଖାଇବା ଲାଗି ସେ ଘରଭିତରକୁ ପଶିଗଲା । ଗୋଟାଏ ହାତରେ କଦଳୀ ଓ ଆର ହାତରେ କାକୁଡ଼ି ଆଣି ଏକାବେଳକେ ପାଟିରେ ପୂରାଇଦେଲା ।

ଯେଉଁ ସମୟରେ ଘରଭିତରେ ଠକ୍ କରି ଶବ୍ଦ ହେଲା । ମାଙ୍କଡ଼ ତାହା ଶୁଣିଲା, ମାତ୍ର ସେ ଖାଇବାରେ ବ୍ୟସ୍ତ । କୁଆଡ଼େ କଅଣ ଶବ୍ଦ ହେଲା, ସେଥିକି ନଘା କରି ଲାଭ କଅଣ ?

ହୋ-ହା ପାଟିକରି କେତେକ ପିଲା ଆସି ଜମିଗଲେ । ତାଙ୍କ ପାଟି ଶୁଣି ମାଙ୍କଡ଼ ପଳାଇଯିବାକୁ ବାହାରିଲା । ପାଟିରେ କାକୁଡ଼ି ଓ କଦଳୀ କାମୁଡ଼ିଥାଏ ।

ମାତ୍ର ଯିବାକୁ ବାଟ କାହିଁ ? ଯେଉଁ ବାଟ ଦେଇ ଆସିଥିଲା, ସେ ବାଟ ତ କଅଣ ବନ୍ଦ । ସେ ସେଠାରୁ ବାହାରିଯିବ କପରି ?

ବହୁତ କୁଦିଲା, ଢ଼ଆଁ ଡେଇଁ କଲା, ଘରପାଖ ବାଡ଼ା ଧରି ଜୋରରେ ହଲାଇଲା । ଶେଷକୁ କେତେ ନାଚିଲା, ଖେଁ ଖେଁ ହୋଇ ଦାନ୍ତ ଦେଖାଇଲା । ତଥାପି କବାଟ ଫିଟିଲା ନାହିଁ କି ମାଙ୍କଡ଼ ଘରଭିତରୁ ବାହାରିପାରିଲା ନାହିଁ ।

ପିଞ୍ଜରାଭିତରେ ବଚାରା ବନ୍ଦୀହୋଇ ରହିଲା ।

---

— ତିନି —

ଦିନେ ଗଲା, ଦୁଇ ଦିନ ଗଲା, ତିନି ଦିନ ବି ଗଲା । ତଥାପି ମାଙ୍କଡ଼ ପିଞ୍ଜରା ଭିତରୁ ପଦାକୁ ଆସିପାରିଲା ନାହିଁ ।

କୁଦକୁଦ ଥକିଗଲାଣି । କେତେବେଳେ ଭୟରେ, ପୁଣି କେତେ-ବେଳେ ରାଗରେ ପିଞ୍ଜରା ବାଡ଼ାକୁ କାମୁଡ଼ି ପକାଉଛି । ଦାନ୍ତ ଭାଙ୍ଗିଯାଇ ରକ୍ତ ବହୁଛି ସିନା; କିନ୍ତୁ ବାଟ ମିଳୁ ନାହିଁ ।

ପିଞ୍ଜରା ଘର କଡ଼ରେ ପ୍ରତିଦିନ କେତେ ପିଲା ଜମୁଛନ୍ତି । ମାଙ୍କଡ଼କୁ ଦେଖି ହସି ହସି ଗଡ଼ିଯାଉଛନ୍ତି । କେତେ ଥଟ୍ଟା ଟାପରା କରୁଛନ୍ତି ।

କିଏ ବାଡ଼ିରେ ଟିକିଏ ଖେଞ୍ଚି ଦେଉଛି । କିଏ ବାଲିମୁଠାଏ ବା ଗୋଡ଼ିଟାଏ ତା ଉପରକୁ ଫିଙ୍ଗୁଛି । ତାକୁ ଯେତିକି କଷ୍ଟ ହେଉଛି, ପିଲାଙ୍କ ଖୁସି ସେତିକି ବେଶୀ । ସେ ଯେତିକି ରାଗରେ ଡ଼ିଆଁ ଡେ଼ଇଁ କରୁଛି, ପିଲାଏ ସେତିକି ହାତତାଳି ଦେଇ ନାଚୁଛନ୍ତି ।



ଏହିପରି କେତେଦିନ ବିତିଗଲା; କେତେ ରାତି ବି ହେଲା । ତଥାପି ସାନଭାଇମାନଙ୍କର ଏ କିଭଳି ଆଦର—ମାଙ୍କଡ଼ ତା ଆଦୌ ବୁଝିପାରିଲା ନାହିଁ । ବେଳେବେଳେ ସେ ମଣିଷଙ୍କ ଉପରେ ଖୁବ୍ ରାଗେ । ପୁଣି ସମୟ ସମୟରେ ଭାବେ, "ଆହା, ପିଲାଲୋକ । ବୁଦ୍ଧି ବିବେକ ହୋଇ ନାହିଁ । କଅଣ କରୁଛନ୍ତି କରିଯାଆନ୍ତୁ ।"

ପ୍ରଥମେ ଦୁଇ ତିନି ଦିନ ଯାଏ ସେ କିଛି ଖାଇଲା ନାହିଁ । ଲୋକ ବା କେତେ ଦିନ ସମ୍ଭାଳନ୍ତା ? ପୁଣି ପିଲାଏ ଆଦର କରି ଯେଉଁ କାକୁଡ଼ିଟିଏ କି ପିଜୁଳିକଷିଟାଏ ଦେଉଛନ୍ତି, ତାକୁ ନ ଖାଇଲେ ପିଲାଙ୍କ ମନରେ ଦୁଃଖ ହେବ ସିନା !

ପରେ ନିଜ ମନକୁ ବୁଝାଇଲା । ପିଲାଏ ଯାହା ଯେତେବେଳେ ଦେଲେ, ତା ଖାଇଲା ।

ସେ ଦେଖିଲା, କିଛି ଦିନପରେ ତାକୁ ଭାତ, ଭୁଜା, ପିଠା ଦିଆ-ଯାଉଚି । ପ୍ରଥମେ ଏ ଗୁଡ଼ାକର ନାମ ସେ ଜାଣି ନ ଥିଲା । କିପରି ଖାଆନ୍ତି, ତାହା ବି ବୁଝି ନ ଥିଲା ।

ତା ଆଗରେ କେତେକ ପିଲା ଭୁଜା, ପିଠା ଖାଇଲେ । ତାଙ୍କ ଦେଖାଦେଖି ସେ ମଧ୍ୟ ତାହା ଖାଇଲା ।

ସେ ଜାଣିଲା, ଏହା ଗଛର ଫଳ ନୁହେଁ କି ପତ୍ର ନୁହେଁ । ତଥାପି ଖାଇବାକୁ ଭଲ ଲାଗୁଚି । ସେହିଦିନୁ ସେ ଏସବୁ ଦ୍ରବ୍ୟ ଖାଇବାକୁ ବଡ଼ ଉଚ୍ଛନ୍ନ ହେଲା । ପାଖରେ ପିଲାଙ୍କୁ ଦେଖିଲେ, କେତେ ନାଚେ, କୁଦାମାରେ । ଚେଁ ଚୁଁ ହୁଏ । କହେ, "ମୋତେ ଖାଇବାକୁ ଦିଅ । ଭୁଜା ଦିଅ, ପିଠା ଦିଅ ।"

କେତେଦିନ ପରେ ସେହି ପିଞ୍ଜରାଭିତରଟା ତାହାର ଦେହସୁହା ହୋଇଗଲା । ପ୍ରଥମେ ପ୍ରଥମେ ଯେପରି ବିରକ୍ତ ଲାଗୁଥିଲା, ତାହା ଆଉ ରହିଲା ନାହିଁ । ସେ ଜାଣିଗଲା ଯେ, ଏଇ ମୋର ଘର, ଏଇଠାରେ ବସିରହି ନିତିପ୍ରତି ମୁଁ ଖାଇବାକୁ ପାଇବି । ମୋତେ ଆଉ ବଣଜଙ୍ଗଲରେ ଆହାର ଖୋଜିବାକୁ ପଡ଼ିବ ନାହିଁ । ଗଛରୁ ଗଛକୁ ଡେଇଁ ମୁଁ ଆଉ ବୁଲିବ ନାହିଁ ।

ତଥାପି ଥରେ ଥରେ ତାର ପୁରୁଣା କଥା ମନରେ ପଡ଼ିଯାଏ । ତା’ ମା’ ପିଠିରେ କପଟ 'ଲାଉ' ହୋଇ ସେ ବୁଲୁଥିଲା । ଟିକିଏ ବଡ଼ ହେଲା, ସାଙ୍ଗସାଥୀଙ୍କ ସହିତ ଖେଳିଲା । ଗୋଟିଏ ବଣ ଛାଡ଼ି ଆଉ ଗୋଟାଏ ବଣକୁ ଗଲା । ସେଠାରୁ ଗ୍ରାମମଧ୍ୟକୁ ଆସିଲା । ଗଛର ଡାଳକୁ ଡେଇଁଲା । ପ୍ରଥମେ ମନୁଷ୍ୟକୁ ଦେଖିଲା । ମନୁଷ୍ୟ ନୁହଁନ୍ତି, ନର—ତାଙ୍କ ବଂଶର ସାନଭାଇ । ବର୍ତ୍ତମାନ ସେ ପୁଣି ତାଙ୍କର ହାତରେ ବନ୍ଦୀ ।

ମାଙ୍କଡ଼ ମନେମନେ ଭାବିଲା, “ଏ ମନୁଷ୍ୟମାନଙ୍କ ମନରେ ସ୍ନେହ ଶ୍ରଦ୍ଧା କିଛି ନାହିଁ । ବଡ଼ଭାଇକୁ ଏଭଳି କଷ୍ଟ ଦେଉଛନ୍ତି । ତାଙ୍କ ଭିତରେ ତ ସେହିପରି ମରାମରି ହେଉଥିବେ । ଭଗବାନ ତାଙ୍କୁ ଆଉ କେବେ ବୁଦ୍ଧି ଦେବେ, ବିବେକ ଦେବେ । ସେମାନେ ଆମଭଳି ହେବେ, ଆମ ମର୍ଯ୍ୟାଦା ବୁଝିବେ ।”

ସେହି ପିଂଜରାଭିତରେ ରହି ମାଙ୍କଡ଼ ମନୁଷ୍ୟଙ୍କ ବିଷୟରେ ବହୁତ କଥା ଜାଣିଲା; ମନୁଷ୍ୟଙ୍କୁ ଚିହ୍ନିଲା ।

ଦେଖିଲା, ମନୁଷ୍ୟମାନେ ନିଜ ଦେହରେ ଆଉ ଗୋଟିଏ ଚମଡ଼ା ଘୋଡ଼ାଇ ହେଉଛନ୍ତି । ତାକୁ କହୁଛନ୍ତି ଲୁଗା, ଜାମା, ଚାଦର ।

ଆଉ ମଧ୍ୟ ଦେଖିଲା, କେଣେ ଜଣେ ମନୁଷ୍ୟ ବହୁତ ଖାଉଛନ୍ତି । ଖାଇଖାଇ ସେମାନଙ୍କ ପେଟ ଫୁଲୁଛି, ରୋଗିଣା ହେଉଛନ୍ତି । ପୁଣି ଜଣେ ଜଣେ ଜମା ଖାଇବାକୁ ପାଉନାହାନ୍ତି । ସେମାନଙ୍କୁ କୁହାଯାଉଛି ଗରିବ । ନ ଖାଇ, ନ ପିଇ ଶୁଖିଶୁଖି ସେମାନେ ମରୁଛନ୍ତି ।

କଆଁରେ ବାବୁ ! ଯାହା ତ ଅଛି, ତାକୁ ବାଣ୍ଟିକୁଣ୍ଟି ଖାଇବ । ନ ଥାନ୍ତା ଭଲ । ଯେଉଁମାନେ ବେଶୀ ଖାଇବାକୁ ପାଉଛନ୍ତି; ସେମାନଙ୍କ ଘରେ ଆହୁରି ଖାଇବା ପଦାର୍ଥ ପୂରି ରହିଛି । ତାକୁ ସାତ ସିନ୍ଦୁକରେ

ତାଲି ପକାଇ ସାଇତ ରଖୁଚନ୍ତି । ସେଥିରୁ ମୁଠାଏ ହେଲେ ଅନ୍ୟକୁ ଦେଉ ନାହାନ୍ତି । ଏ କୁଆଡର କଥା ?

ମନୁଷ୍ୟଗୁଡ଼ାକଙ୍କର ଗୋଟାଏ ଅତି ପ୍ରିୟ ଦ୍ରବ୍ୟ ଅଛି । ତାହା ଆମ୍ବ, କଦଳୀ ନୁହେଁ, କି କୌଣସି ରକମର ହେଲେ ଖାଦ୍ୟଜିନିଷ ନୁହେଁ । ତାକୁ ଖାଇଲେ ମନୁଷ୍ୟ ମରିଯିବ । ତଥାପି ମନୁଷ୍ୟ ତାକୁ ଅତି ଯତ୍ନରେ ସାଇତି ରଖିଛି । ତାକୁ ପାଇବା ପାଇଁ କେତେ ଦିନ ରାତି ଦଉଡ଼ୁଚି; ପରିଶ୍ରମ କରୁଚି । ତାହାର ନାମ ଟଙ୍କା ପଇସା ।

ଏହି ଟଙ୍କା ପଇସା ଲାଗି ନିଜ ଭିତରେ ହଣାକଟା, ମରାମରି, ପିଟା-ପିଟି ଚାଲିଛି । ଚୋରି ଡକାଏତି ହେଉଛି ।

ତାର ଇଚ୍ଛା ହେଲା, ତା ଭାଷା ମନୁଷ୍ୟମାନେ ବୁଝନ୍ତେ କି ? ସେ ସେମାନଙ୍କୁ ବତାଇ ଦିଅନ୍ତା, "ଟଙ୍କା ପଇସା ପଛରେ ଆଉ ଗୋଡ଼ାଅ ନାହିଁ । ତାକୁ ଦୂରକୁ ଫିଙ୍ଗି ଦିଅ । ତାହା ବିଷ । ସେ ବିଷ ଏପରି ଭୟଙ୍କର ଯେ, ଯେ ତାକୁ ପାଇବ ସେ ମରିବ; ଯେ ନ ପାଇବ ସେ ବି ମରିବ ।"

କିନ୍ତୁ ଏ ପିଲାଗୁଡ଼ାକ କଅଣ ତା କଥା ବୁଝିବେ ? ଏତେ କଥା ବୁଝିବାକୁ ତାଙ୍କର ବୁଦ୍ଧି କାହିଁ ? ସେମାନଙ୍କର ଯେ ଲାଙ୍ଗୁଡ଼ ଉଠିନାହିଁ ।

ପୁଣି ସମୟ ସମୟରେ ସେ ଭାବେ, ମୁଁ ହେଲେ ମଣିଷ ହୋଇଯାଆନ୍ତି । ସେମାନଙ୍କ ଭଳି ସେହିମାନଙ୍କ ଭାଷାରେ କଥାବାର୍ତ୍ତା କରିପାରନ୍ତି । ସେତେବେଳେ ସେମାନଙ୍କୁ ଶିକ୍ଷା ଦିଅନ୍ତି, "ଆଉ ନିଜଭିତରେ କଳିଗୋଳ ଲଗାଅ ନାହିଁ, ମରାମରି ହୁଅ ନାହିଁ, ମିଳାମିଶି ଚଳ ।"

ଏହା ସଙ୍ଗେ ସଙ୍ଗେ ତା ମନରେ ଖେଳିଯାଏ, "ମନୁଷ୍ୟଗୁଡ଼ାକ ଅକୃତଜ୍ଞ । ସେମାନେ କଅଣ ମୋ କଥା ମାନିବେ ? ନିଜର ସୁଖ ସୁବିଧା ପାଇଁ ଅନ୍ୟକୁ ଯେ କଷ୍ଟ ଦିଏ; ତାହାର କଅଣ କେବେ ବୁଦ୍ଧି ହେବ ?"

ମାଙ୍କଡ଼ଟି ଏହାପରି କେତେ କଅଣ ଭାବେ । ପିଞ୍ଜରାରେ ବନ୍ଦୀ-ହୋଇ ପଡ଼ି ରହିଥାଏ । ଯେତେବେଳେ ଖାଇବାକୁ ମିଳେ, ସେତେ-ବେଳେ ଖାଏ । ସେ ଜାଣିଛି—ଯାହା ମିଳିବ, ସେଇଥିରେ ଶାନ୍ତିରେ ରହ । ବେଶୀଗୁଡ଼ାଏ ଖାଇବାକୁ ଲୋଭ କରନାହିଁ । ପେଟୁଙ୍କ ଭଳି ଗୁଡ଼ାଏ ଖାଇଲେ ନିଜ ପେଟ ତ ଖରାପ ହେବ, ଅନ୍ୟ ସାଙ୍ଗସାଥୀ ମଧ୍ୟ ଖାଇବାକୁ ପାଇବେ ନାହିଁ ।

———

—ଚାରି—

କିଛି ଦିନ କଟିଗଲା । ପିଲାମାନେ ମାଙ୍କଡ଼ ବେକରେ ଗୋଟାଏ ଲୁହାଜଞ୍ଜିର ବାନ୍ଧିଲେ । ତାକୁ ପିଞ୍ଜରାମଧ୍ୟରୁ ପଦାକୁ ଆଣିଲେ ?



ପଦାକୁ ଆସିଲା ବୋଲି ମାଙ୍କଡ଼ଟି ମନେମନେ ଖୁସିହେଲା । କିନ୍ତୁ ଭାବିଲା, ବେକରେ ଏପରି ଜଞ୍ଜିର ବାନ୍ଧିଲେ କାହିଁକି ?

ସେ ମନୁଷ୍ୟ ତାକୁ ଭଲଲାଗୁଥିଲେ, ସେ ଜାଗା ତାକୁ ଆଉରେଇ ଯାଇଥିଲା । ତେଣୁ ବଣକୁ ଯିବାଲାଗି ତାହାର ଆଉ ଇଚ୍ଛା ହେଉ ନ ଥିଲା ।

ପିଲାମାନେ ଗୋଟିଏ ଲୋକକୁ ତାକୁ ଦେଇଦେଲେ । ମାଙ୍କଡ଼ ପରେ ଜାଣିଲା, ସେ ଲୋକକୁ କେଲା ବୋଲି ଡାକନ୍ତି ।

କେଲାଟି ମାଙ୍କଡର ବଡ଼ ଆଦର ଯତ୍ନ କଲା । ତାକୁ ଆଉଁସିଦେଲା । ପୋଖରୀକୁ ନେଇ ସାବଧାନରେ ଗାଧୋଇଦେଲା । ସେହି ହେଲା ମାଙ୍କଡ଼ର ମୁରବି । ମାଙ୍କଡ଼ ମଧ୍ୟ ତାକୁ ବିଶ୍ୱାସ କଲା । ତାହାରି କଥା ମାନି ଚଳିବ ବୋଲି ମନେମନେ ଠିକ୍ କରିନେଲା ।

କେଲା ତା ନାମ ଦେଲା 'ରାମକାର୍ଯୀ' । ମାଙ୍କଡ଼ ଟିକିଏ ଖୁସି ହେଲା । ଯାହାହେଉ, ଏତେ ଦିନେ ତାର ଗୋଟିଏ ନାମ ହୋଇଛି । ଏ ପର୍ଯ୍ୟନ୍ତ ତାର କିଛି ନାମ ନ ଥିଲା । ସମସ୍ତେ ବେଖାତିର୍ କରି ଡାକୁଥିଲେ "ମାଙ୍କଡ଼, ପାଡି" । କିନ୍ତୁ କେଲା ଡାକିଲା "ରାମକାର୍ଯୀ ।"

ଖୁସିରେ ତା ମନ ନାଚିଉଠିଲା । ସେ ମନେକଲା, ଏହା ଫଳରେ ତା ମାନମର୍ଯ୍ୟାଦା ବହୁତ ବଢିଗଲା ।

କେଲା କେବଳ ନାମଟାଏ ଦେଇ ଚୁପ୍ ରହିଲା ନାହିଁ । ତା ପାଇଁ କେଡ଼େ ସୁନ୍ଦର ପୋଷାକ ତିଆରି କରିଦେଲା । ନାଲି ଛିଟକନାର ଜାମା, ମୁଣ୍ଡରେ ଚଢେଇର ପର ଲଗା ଟୋପି ।

ପ୍ରଥମେ ଏଗୁଡ଼ାକ ପିନ୍ଧିବାକୁ ରାମକାର୍ଯୀକୁ ଭଲ ଲାଗୁ ନ ଥିଲା । ବଡ଼ ଅଡୁଆ ହେଉଥିଲା । ଦେହଟା ବାନ୍ଧିହୋଇ ରହିଲା ପରି ଜଣା-ପଡ଼ୁଥିଲା । ସେ ହାତରେ ଜୋର ଲଗାଇ ସେ ଜାମାକୁ ଚିରିଦେଇ ପକାଇବାକୁ ଚେଷ୍ଟାକଲା । ମାତ୍ର କେଲାଠାରୁ ଦୁଇ ଚାରି ପାହାର ଖାଇବାରୁ ଥୟ ହେଲା ।

ରାମକାଯାଁ ଜାଣେ, ମଣିଷଗୁଡ଼ାକ ଅସଭ୍ୟ, ତେଣୁ ପୋଷାକ ପିନ୍ଧୁଛନ୍ତି । ଦେହରେ ଲୋମ ନ ଥିବାରୁ, ତାହାକୁ ଘୋଡ଼ାଇ ରଖୁଛନ୍ତି । ବାନରଙ୍କ ପରି ସଭ୍ୟ ହୋଇଥିଲେ, ଆଉ କୌଣସି ପ୍ରକାର ପୋଷାକ ସେମାନଙ୍କର ଦରକାର ହେବନାହିଁ । ସେ ସଭ୍ୟ ହୋଇ ଅସଭ୍ୟଙ୍କ ପରି ପୋଷାକ ପିନ୍ଧିବ କାହିଁକି ?

ପରେ ମାଡ଼ଖାଇ ଭାବିଲା, "ମୁଁ ଯେତେବେଳେ ଅସଭ୍ୟଙ୍କ ସାଙ୍ଗରେ ରହିବ, ମୋତେ ସେହିପରି ଅସଭ୍ୟ ହୋଇ ଚଳିବାକୁ ହେବ । ଏଠାରେ ସଭ୍ୟ ବାନରର ମର୍ଯ୍ୟାଦା ବୁଝିବ କିଏ ?" ଏହା ଭାବି ସେ ବାଧ୍ୟ ହୋଇ ଜାମା ଦେହରେ ଲଗାଇବାକୁ ସ୍ଥିରକଲା ।

ପରେ ପୋଷାକ ପିନ୍ଧିବା ତାର ଅଭ୍ୟାସ ହୋଇଗଲା । ସେ ଭାବିଲା, "ପୋଷାକଟା ମୋ ଆଦର ବଢ଼ାଇଦେଇଛି । ଏହାକୁ ପିନ୍ଧିଲେ ମୁଁ ତ ଗୋଟାଏ ରାଜା ବା ଧନୀ ଲୋକପରି ଦେଖାଯାଉଛି । ଏହି ରାଜା ବା ଧନୀଲୋକଙ୍କୁ ତ ମନୁଷ୍ୟମାନେ ସବୁବେଳେ ପୂଜା କରନ୍ତି; ପାଦତଳେ ମୁଣ୍ଡିଆ ମାରନ୍ତି ।"

କେଲା ରାମକାଯାଁକୁ କେତେ ପ୍ରକାର ନାଚ ଶିଖାଇଲା । ପ୍ରଥମରେ ଦୁଇ ଗୋଡ଼ରେ ଚାଲିବାକୁ ବାଧ୍ୟ କଲା । ମାଡ଼ଭୟରେ ସେ ଦୁଇ ଗୋଡ଼ରେ ଚାଲି ଶିଖିଲା ।

ତାପରେ ନାଚିବା, କୁଦିବା, ଭାର ବୋହିବା, ରୁଷି ବସିବା— ଏହିପରି କେତେ କଥା ସେ ଶିଖିଲା । କେଲା ବେତ ମାଡ଼କୁ ଡର ନ କରିବା କାମ ସେ କଲା । ସେଥିରେ ତା ମନରେ ବଡ଼ ଦୁଃଖ ହେଉଥାଏ । ମାତ୍ର ଉପାୟ କିଛି ଦିଶୁ ନ ଥାଏ ।

ନାଚ ଶିଖିସାରିଲା ପରେ କେଲା ରମକାଯୀକୁ ସାଙ୍ଗରେ ଧରି ଗାଁ ଗାଁ ବୁଲିଲା । ସ୍ଥାନେସ୍ଥାନେ ବାଜା ବଜାଇ ତାକୁ ନଚାଇଲା । ସେତେବେଳେ



ବହୁତ ପିଲା ସେ ନାଚ ଦେଖିବାକୁ ରୁଣ୍ଡ ହେଲେ । ସେମାନଙ୍କର କି ଖୁସି ! ମାଙ୍କଡ଼ ମାଡ଼ ଭୟରେ ମନଦୁଃଖରେ ନାଚୁଛି, ଅଥଚ ପିଲାଗୁଡ଼ାକ ହସ ହସି ଗଡ଼ୁଯାଉଛନ୍ତି ।

ରମାକାଯୀର ପିଲାଙ୍କ ଉପରେ ପ୍ରଥମେ ପ୍ରଥମେ ରାଗ ହେଉଥିଲା । ମାତ୍ର କ୍ରମେ ତାହା ବଦଳିଗଲା । ସେ ବୁଝିପାରିଲା ଯେ, ପିଲାଏ ତାକୁ ପ୍ରଶଂସା କରୁଛନ୍ତି । ତା ମନ କୁଣ୍ଢେମୋଟ ହୋଇଗଲା । ଖୁସିରେ ଗୋଡ଼

ଠାଆଙ୍କୁ ଚଢ଼ାଠାଆ ପଡ଼ିଲା । ଶେଷକୁ ଏପରି ହେଲା ଯେ, ନ ନାଚିଲେ ତା ଗୋଡ଼ ଖଜବଜ ହେଲା, ମନ ହାଇଁପାଇଁ ହେଲା ।

କେଲା ତାକୁ କାହିଁ କି ଗାଁ ଗାଁ ବୁଲାଉଛି – ଏହା ଜାଣିବାକୁ ତାର ଭାରି ଇଚ୍ଛାହେଲା । ସେ ତ ମାଡ଼ଭୟରେ ନାଚେ । ନାଚ ସରିଲେ ପିଲା-ମାନେ କେଲା ଡାଲାକୁ ଠଣଠାଣ ପଇସା ପକାଇଦିଅନ୍ତି ।

ରାମକାଯୀ ପ୍ରଥମେ ତାହା କିଛି ଖାଇବାପଦାର୍ଥ ବୋଲି ଭାବିଥିଲା । ତେଣୁ ଲୋଭକରି ଥରେ ଗୁଳାଏ ପାଟିରେ ପୂରାଇଦେଲା । ଗାଲପାଖରେ ଥିବା ଥଳୀରେ ଲୁଚାଇ ରଖିଲା । ଭାବିଲା, ସମୟ ହେଲେ ବାହାର କରି ଖାଇବ ।

ସୁଯୋଗ ବି ମିଳିଲା । କେଲା ଖରାବେଳେ ଗୋଟିଏ ଗଛତଳ ଛାଇରେ ଶୋଇ ପଡ଼ିଲା । ରାମକାଯୀ ସେତିକିବେଳେ ଗାଲଥଳୀରୁ ସେ ସବୁ ଜିନିଷ ବାହାରକରି ଚୋବାଇବାକୁ ଲାଗିଲା ।

ଏ କଅଣରେ ବାପା ! ଏ କିଭଳି ଖାଇବା ପଦାର୍ଥ ! ଏତେ ଟାଣ, ଦାନ୍ତ ଭାଙ୍ଗି ଯାଉଛି ।

ସତକୁ ସତ ତାର ଦୁଇଟା ଦାନ୍ତ ଝଡ଼ିପଡ଼ିଲା । କିନ୍ତୁ ସେ ଦ୍ରବ୍ୟ ଚୋବାଇ ହେଲାନାହିଁ । ରାଗରେ ପାଟିରୁ କାଢ଼ି ସେ ତଳେ ପକାଇ-ଦେଲା । ମନରେ ଭାବିଲା, ଏହା ନିଶ୍ଚୟ ଗୋଟାଏ ବିଷ ।

ପରେ ସେ ବୁଝିପାରିଲା, ଏଗୁଡ଼ାକର ନାମ ଟଙ୍କାପଇସା । ଏହି ଟଙ୍କାପଇସା ନାଁ ଆଗରୁ ସେ ଶୁଣିଥିଲା; ମାତ୍ର ଆଖିରେ ଦେଖି ନ ଥିଲା । ଏବେ ଦେଖି, ପରୀକ୍ଷା କରି ଭଲ ରୂପେ ବୁଝିଗଲା, ଏହା ସାପ ବିଷଠାରୁ ବଳେ । ଏହି ବିଷଲାଗି ମଣିଷଗୁଡ଼ାକ ପାଗଳ ପରି ହୁଅନ୍ତି । ଏହାକୁ ପାଇବା ପାଇଁ ନିଜ ଭିତରେ ବାଡ଼ିଆପିଟା ଲଗାନ୍ତି । ଭାଇ ଭାଇକୁ ମାରେ,

ବାପ ପୁଅରେ ଅପଡ଼ ହୁଏ। ଏହି ବିଷ ଯାହାର ଯେତେ ବେଶୀ ଅଛି, ସେ ସେହି ପରିମାଣରେ ପାଗଳ । ତଥାପି ଅସଭ୍ୟ ମଣିଷଗୁଡ଼ାକ ତା ଲୋଭ ଛାଡ଼ିପାରନ୍ତି ନାହିଁ—ତା ପଛରେ ଗୋଡ଼ାନ୍ତି। ଏ କିପରି କଥା ?

ଏ ବିଷୟରେ ରାମକାଯୀ ଯେତେ ଭାବିଲେ ବି କିଛି ଠିକ୍ କରି-ପାରେ ନାହିଁ ।

ସେ ନାଚୁଥିବା ବେଳେ ସମୟ ସମୟରେ ପିଲାମାନେ ତା ପାଖକୁ କଦଳୀଟାଏ, ପିଜୁଳିଟାଏ ପକାଇଦିଅନ୍ତି । ତାକୁ ଖାଇ ସେ ଖୁସି ହୁଏ। ପିଲାଙ୍କୁ ଆଶୀର୍ବାଦ କରେ। କହେ, "ପିଲାଏ, ତୁମେ ସଭ୍ୟ ହୁଅ, ବୁଦ୍ଧିଆ ହୁଅ। ଟଙ୍କା ପଇସା ପଛରେ ଗୋଡ଼ାଇ ଆଉ ହଟହଟା ହୁଅ ନାହିଁ ।"

ସେ କଅଣ ସତରେ ଏ କଥା କହେ ? ତାହାର ତ ଆମପରି ପାଟି ଫିଟୁନାହିଁ। ସେ କହିବା ବା କିପରି ? କେବଳ ମନଭିତରେ ଭାବୁଥାଏ ସିନା !

—————

—ପାଞ୍ଚ—

ରାମକାଯୀ ଛଅମାସଯାଏ କେଲାପାଖରେ ରହିଲା। କେଲା ତାକୁ ନଚାଇଲା, ବହୁତ ଟଙ୍କାପଇସା ପାଇଲା । ସେଥିରେ ଖାଇବାଜିନିଷ କିଣି ନିଜେ ଖାଇଲା, ରାମକାଯୀକୁ ବି ଖାଇବାକୁ ଦେଲା।

କେଲା ପାଖରେ ରହି ମାଙ୍କଡ଼ ତାର ଆଗ କଥାସବୁ ଭୁଲିଗଲା। ସେ ଭାବିଲା, ଏଇ ମୋର ସ୍ୱର୍ଗ, ଏଇ ଜନ୍ମସ୍ଥାନ। ନାଚିବା ମୋର ପେଷା।

କେଲା ପୁଣି ଗୋଟାଏ ଛେଳି କିଣିଲା । ମାଙ୍କଡ଼ଟି ଏପର୍ଯ୍ୟନ୍ତ ଏକୁଟିଆ ରହିଥିଲା । ତାକୁ ସାଙ୍ଗଟିଏ ମିଳିଗଲା। ତା ଖୁସି କହିଲେ ନ ସରେ ।

ଛେଳି ପ୍ରଥମରେ ମାଙ୍କଡ଼କୁ ଦେଖି ଡ଼ରୁଥିଲା । ତା ପାଖକୁ ଆସୁ ନ ଥିଲା । ରାମକାଯୀ ଏହା ବୁଝିପାରିଲା । ସେ ଯାଇ ଛେଳିକୁ ବହୁତ ଆଦର କଲା, ତା ମୁହଁରେ ମୁହଁ ଲଗାଇ ଶୁଙ୍ଘିଲା ।

ଶେଷକୁ ଛେଳି ଜାଣିଲା ଯେ ରାମକାଯୀ ତାରପର ଗୋଟାଏ ଜୀବ । ସେ ମନୁଷ୍ୟ ନୁହେ, କି ରାକ୍ଷସ ବି ନୁହେଁ ।

କେଲା ଛେଳିପାଇଁ ବି ଗୋଟାଏ ଜାମା କରିଦେଲା । ତାହା ଛେଳିକୁ ପିନ୍ଧାଇ ଦିଏ । ଛେଳି ଓ ମାଙ୍କଡ଼ ଦୁହେଁ ଯାକ ଜାମା ପିନ୍ଧି କଉତୁକରେ ଚାଲନ୍ତି ।



ଛେଳି ଘୋଡା ହୁଏ । ରାମକାଯୀ ଛିଟ ଜାମା ପିନ୍ଧି ତା ପିଠି ଉପରେ ବସେ । ଛେଳି ଦଉଡେ । ରାମକାଯୀ ପଡ଼ିଯିବା ଭୟରେ ତା ବେକକୁ ଜାବୁଡ଼ି ଧରେ ।

ଥରେଥରେ ଛେଳି ଗୋଟାଏ ଗାଡ଼ି ଟାଣେ । ସେ ଗାଡ଼ିରେ ବସି ସମକାର୍ଯୀ ବାବୁ ହୁଏ । ମନଖୁସିରେ ଏପାଖ ସେପାଖ ଚାହେଁ । ମନେ-ମନେ କହେ, "ପିଲାମାନେ ଦେଖ, ମୁଁ କପରି ଗୋଟାଏ ବାବୁ । ମୋର ଟଙ୍କା ନାହିଁ, ପଇସା ନାହିଁ—ତଥାପି ମୁଁ ନବାବଙ୍କ ପରି ଜାମା ପିନ୍ଧିଚି, ଗାଡ଼ିରେ ବସି ଯାଆସ କରୁଚି ।"

ଗାଡ଼ିରୁ ଓହ୍ଲାଇବାକୁ ତାହାର ଜମା ମନ ହୁଏ ନାହିଁ । ସେ ଭାବେ, ସବୁବେଳେ ମୁଁ ଏଇପରି ଗାଡ଼ିରେ ବସିଥାଆନ୍ତି ଛେଳି ଗାଡ଼ି ଟାଣୁଥାଆନ୍ତା କି ?

କିନ୍ତୁ ସେ ମନରେ ଭାବିଲେ କଅଣ ହେବ ? କେଲା ବାଡ଼ିକୁ ତଳେ ପିଟି ତାକୁ ଧମକ ଦେଇ କହିଦଏ, "ଓହ୍ଲା ତଳକୁ" । ମାଙ୍କଡ଼ ବିଚାରି ଡରମରି ଗାଡ଼ିରୁ ଓହ୍ଲାଇପଡ଼େ । ତାହାର ବାବୁ ହେବା ସଉକୀ ଛାଡ଼ିଯାଏ ।

କେଲା, ମାଙ୍କଡ଼, ଛେଳି—ଏହି ତିନି ଜଣ ଏକାଠି ଖାଇସୁଖରେ ରହି କେତେ ଦିନ କଟାଇଦେଲେ । କେଲା ବାଜା ବଜାଏ; ଛେଳି ଓ ମାଙ୍କଡ଼ ନାଚନ୍ତି । ଯାହା ପଇସା ରୋଜଗାର ହୁଏ, ସେଥିରେ କେଲା ବିଚାରି ଚଳେ, ଛେଳି ମାଙ୍କଡ ବି ଚଳନ୍ତି ।

କାହାରି ସବୁ ଦିନ ସମାନ ଯାଏ ନାହିଁ । କେଲା ଓ ଛେଳି-ମାଙ୍କଡ଼ଙ୍କ ସୁଖରେ ବି ବାଧା ପଡ଼ିଲା ।

କେଲା ଥରେ ଗୋଟିଏ ମେଲାରୁ ଫେରୁଥାଏ !

ମେଲା ପାଞ୍ଚ ଦିନଯାଏ ଲାଗିଥିଲା । ହଜାର ହଜାର ଲୋକ ରୁଣ୍ଡ ହୋଇଥିଲେ । କେଲା ଗୋଟିଏ ଜାଗାରେ ବସି ଛେଳି ମାଙ୍କଡ଼ଙ୍କୁ ନଚାଇଲା । ତାକୁ ଦେଖିବା ଲାଗି କେତେ ବୁଢ଼ାବୁଢ଼ୀ, କେତେ ଭେଣ୍ଡିଆ,

କେତେ ପିଲା ଅସି ଜମା ହୁଅନ୍ତି । ଖେଳ ସରିଗଲେ, ମାଙ୍କଡ ଗୋଟିଏ ମୁଣି ଧରି ସମସ୍ତଙ୍କ ପାଖକୁ ଯାଏ; ସେମାନଙ୍କ ଲୁଗା ଟାଣି, ଗୋଡ଼ ଧରି ପଇସା ଦେବାପାଇଁ ଅଳି କରେ । ଲୋକମାନେ ଖୁସିରେ ପଇସାଏ ଦୁଇ ପଇସା ବା ଅଣାଏ ଦୁଇଅଣା ସେ ମୁଣିରେ ପକାଇ ଦିଅନ୍ତି । ସମସ୍ତଙ୍କଠାରୁ ପଇସା ଆଣି ମାଙ୍କଡ଼ କେଳାକୁ ଦିଏ ।

ସେ ଲୋକେ ଚାଲିଗଲେ ପୁଣି ଖେଳ ଆରମ୍ଭ ହୁଏ । ପୁଣି ଲୋକେ ଖେଳ ଦେଖିବାକୁ ଜମନ୍ତି ।

ଏହିପରି ଦିନଯାକ ଖେଳ ଲାଗି ରହିଥାଏ । ନାଚନାଚ ମାଙ୍କଡ ଓ ଛେଳି ନୟାନ୍ତ ହୁଅନ୍ତି; କେଳାର ମୁଣି ପୂରେ ।

ସେ ପାଞ୍ଚ ଦିନଯାକ ଖେଳ ଦେଖାଇ କେଳା ବହୁତ ଟଙ୍କା ପାଇଲା । ଖୁସିମନରେ ମାଙ୍କଡ଼ ଓ ଛେଳିକୁ ଧରି ନିଜ ଗ୍ରାମକୁ ଫେରିଲା ।

ବାଟରେ ସନ୍ଧ୍ୟା ହେଲା । କେଳା ପାଖରେ କୌଣସି ଗାଁ । ଗଣ୍ଡା ନ ଦେଖି ଗୋଟିଏ ଗଛମୂଳରେ ଆଶ୍ରୟ ନେଲା ।

ନିଛାଟିଆ ଜଙ୍ଗଲ ସ୍ଥାନ । କେଳାର ଭୟ ହେଲା, ବାଘ ଭାଲୁ କି ସାପ ବାହାରି ତାକୁ କାମୁଡ଼ିଲେ ସେ କଅଣ କରିବ ? ମାତ୍ର ଆଉ ତ ଉପାୟ ନାହିଁ । ପାଖରେ ଗାଁ । ଗଣ୍ଡା କିଛି ଦିଶୁ ନାହିଁ । ତେଣୁ ବାଧ୍ୟ ହୋଇ ସେହିଠାରେ ରହିଲା ।

ରାତିରେ ବାଘ ଭାଲୁ ଆସିଲେ ନାହିଁ । ସେମାନଙ୍କଠାରୁ ବେଶୀ ହିଂସ୍ର ଦଳେ ଲୋକ ଆସିଲେ । ସେମାନେ ଡକାଏତ ।

ବାଘ ଭାଲୁଙ୍କଠାରୁ ହେଲେ ରକ୍ଷା ମିଳିଥାନ୍ତା; ମାତ୍ର ଏମାନଙ୍କ ହାତରୁ ତ ଆଉ ରକ୍ଷା ମିଳିବ ନାହିଁ !

ସମସ୍ତେ ଘେରଯାଇ କେଲାକୁ ମାରିପକାଇଲେ । ତା ପାଖରେ ଥିବା ଟଙ୍କା ପଇସା ନେଇଗଲେ । ଛେଳକୁ ହାଣି ତା ମାଂସ ଟିକଟିକ କାଟି ପକାଇଲେ । ସେହିଠାରେ ରୁଷାଇ କରି ଖାଇଲେ । ସେତେବେଳେ ସେମାନେ ଯେଉଁ ଖୁସି, ତା କହିହେବ ନାହିଁ ।

ମାଙ୍କଡ ବାନ୍ଦରା ଟିକଏ ଦୂରରେ ଗୋଟିଏ ବୁଦାମୂଳରେ ବସି ଘୁମାଉଥିଲା । ଏ ଗୋଲମାଲରେ ତା ନିଦ ଭାଙ୍ଗି ଗଲା । ସେ ଆଖି ମେଲି ଚାହିଁ ଦେଲାକ୍ଷଣି ଦେଖିଲା, ତା ମୁନିବ—ବାନ୍ଦରା କେଲା ମରିପଡ଼ିଚି । ଛେଳି ଦୁଇଗଡ଼ ହୋଇ କଟା ହୋଇଚି । ମୁଣ୍ଡ ନ ଥିବା ଗଣ୍ଡିଟା କିଛି ଦୂରରେ ପଡ଼ି ଛାଟିପିଟି ହେଉଚି; ପଛ ଦୁଇ ଗୋଡ଼ ବାଡ଼ଉଚି । ତଟକା ରକ୍ତରେ ସେ ଜାଗାଟା ଲାଲ ହୋଇଯାଇଚି ।

ରାମକାଯୀର ହାଲୁକ ଶୁଖିଗଲା ସେ ଭାବିଲା, "ବାପରେ ! ଏମାନେ କି ଭୀଷଣ, କପରି ନିଷ୍ଠୁର ? ଏମାନଙ୍କ ମନରେ କଅଣ ଟିକଏ ହେଲେ ଦୟା ମାୟା ନାହିଁ ?"

ଭାବିବାକୁ ସମୟ ବା କାହିଁ ?

ସେ ପ୍ରାଣଭୟରେ ବହୁତ ଟାଣି ଓଟାରି ହୋଇ ବେକରେ ବନ୍ଧା ଥିବା ଦଉଡ଼ା ଛିଡ଼ାଇଦେଲା । ଚୁପ୍ ଚୁପ୍ ଗୋଟାଏ ଗଛଉପରକୁ ଚଢ଼ିଗଲା । ପତ୍ରଗହଳରେ ଲୁଚିବସି ଏହି ଲୋକଙ୍କୁ ଚାହିଁ ରହିଲା ।

ରାତି ପାହିଲା, ଲୋକଗୁଡ଼ାକ ଖୁସିମନରେ ସେ ସ୍ଥାନ ଛାଡ଼ି ଚାଲିଗଲେ ।

ସେମାନେ ଆଖି ଆଗରୁ ଅଦୃଶ୍ୟ ହେଲାରୁ ରାମକାଯୀ ଟିକଏ ଆଶ୍ୱସ୍ତ ହେଲା । ଗଛଉପରୁ ଓହ୍ଲାଇ କେଲା ପାଖକୁ ଆସିଲା । ତା ଦେହଯାକ ଶୁଙ୍ଘିଲା, ଆଉଁସିଦେଲା, କେତେ ହଲାଇଲା । ସେହିଠାରେ ନାଚିକୁଦି ଚେଁ ଚାଁ ପାଟିକଲା । ମାତ୍ର କିଏ ଅଛି ଯେ, ତା ଗୁହାରି ଶୁଣିବ ? ବହୁ

ସମସ୍ତ ପରେ ମନରେ ଦୁଃଖକରି ସେ ତାକୁ ଛାଡ଼ି ବଣ ଭିତରକୁ ଚାଲିଗଲା ।



ନିଜର ଖାଇବା ଓ ରହିବା ଚିନ୍ତା ଏ ପର୍ଯ୍ୟନ୍ତ ସେ ଭୁଲିଯାଇଥିଲା । ତା କଥା ଭାବିବାକୁ ଆଉ ଜଣେ ଲୋକ ଥିଲା । ଏବେ ସେ ନାହିଁ । ତେଣୁ ତା ଚିନ୍ତା ତାକୁ ବେଶୀ ଲାଗିଲା ।

ରାମକାଯୀ ସେ ବଣରେ ଆଉ ନ ରହି ଗୋଟାଏ ଦୂର ଗ୍ରାମକୁ ଚାଲିଗଲା । ସେଠାରେ ଗଛଉପରେ ରହିଲା, ଫଳ ପତ୍ର ଖାଇ ପେଟ ପୂରାଇଲା ।

କିଛିଦିନ ପରେ ସେଠାରେ ଦଳେ ମାଙ୍କଡ ଆସି ଜୁଟିଗଲେ, ସେ ହେଲା ତାଙ୍କର ନେତା–ସର୍ଦ୍ଦାର । ସେମାନଙ୍କ ଉପରେ ହାକିମ ଚଳାଇଲା ।

———

—ଛଅ—

ସେଠାରେ ମଧ୍ୟ ରାମକାଯୀ ନିଶ୍ଚିନ୍ତରେ ରହିପାରିଲା ନାହିଁ । ଗୋଟିଏ କୁକୁର ହେଲା ତାର ବଡ଼ ଶତ୍ରୁ ।

ରାମକାଯୀ ତା ଦଳବଳ ଧରି କେତେବେଳେ କିପରି ଗାଁ ମଧ୍ୟକୁ ଗଲେ କୁକୁରଟା କାମୁଡ଼ି ଗୋଡ଼ାଏ । ଭୋ ଭୋ ରଡ଼ି ଛାଡ଼ି ଡ଼ିକପୁର କମ୍ପାଏ । ଗଛଳରେ ଟିକିଏ ହେଠେଲ ଏମାନଙ୍କୁ ବସେଇ ଦିଏ ନାହିଁ ।

ରାମକାଯୀ ମନରେ ବଡ଼ ରାଗ ହେଲା । କୁକୁରକୁ କିପରି ଜବତ କରିବ, ସେଇ ଚିନ୍ତା ସେ କଲା ।

ଦିନେ ସେ ଦେଖିଲା, କୁକୁରଟା ମନଖୁସିରେ ଗୋଟିଏ କୂଅପାଖରେ ଶୋଇଛି । ରାମକାଯୀକୁ ସୁବିଧା ମିଳିଗଲା । ସେ ତା ଦଳରୁ ଗୋଟାଏ ବଳୁଆ ସାଙ୍ଗକୁ ଡ଼ାକିନେଲା । ଦୁହେଁଯାକ ଚୁପ୍‌ଚୁପ୍ ଯାଇ କୁକୁର ପାଖରେ ପହଞ୍ଚିଗଲେ ।

ରାମକାଯୀ ଓ ତା ସାଙ୍ଗ ଯାଇ ହଠାତ୍ କୁକୁରର ଚାରିଗୋଡ ଯୋରରେ ଧରି ପକାଇଲେ । ରାମକାଯୀ ଆଗ ଦୁଇଗୋଡ଼, ସାଙ୍ଗ ପଛ ଦୁଇଗୋଡ଼ ଧରିଲା । ଦୁହେଁଯାକ କୁକୁରକୁ ଟେକି ଝୁଲେଇ ଆଣିଲେ । କୁକୁର ଯେତେ ଭୋ ଭୋ ହେଲେ କଅଣ ହେବ ? ଦୁଇଟା ସାକ୍ଷାତ ଯମ ହାତରେ ଯେ ପଡ଼ିଛି, ମୁକୁଳିବାକୁ ବାଟ କାହିଁ ?

ଦୋଳୀ ଖେଳାଇଲା ଭଳି କୁକୁରକୁ ହଲାଇ ହଲାଇ ଦୁଇଟିଯାକ ମାଙ୍କଡ଼ କୂଅପାଖକୁ ନେଲେ । କୂଅର ଦୁଇପାଖରେ ଠିଆହେଲେ ।



କୁକୁର କୂଅର ଠିକ୍ ମଝିରେ ରହିଲା । ଦୁହେଁଯାକ ଏକାବେଳକେ ହାତ ଛାଡ଼ିଦେଲେ । କୁକୁର ଦଡଭୁଡସ କରି ପାଣିଭିତରେ ପଡ଼ିଗଲା ।

ଏଣିକି ରମକାଯୀ ନିଶ୍ଚିନ୍ତ, ସେ ଗ୍ରାମଯାକ ବୁଲି ଚାଳରୁ କଖାରୁ, ବାଡ଼ିରୁ କଦଳୀ, ବାଇଗଣ ମନ ଆନନ୍ଦରେ ଖାଇଲା । ଦଳବଳ ଧରି ଆନନ୍ଦରେ ରହିଲା ।

ସେ ମନେମନେ ଠିକ୍ କରିନେଲା, ଯାହାହେଉ ଏଣିକି ଆଉ ଦୁଃଖ କଷ୍ଟ ଭୋଗିବାକୁ ପଡ଼ିବ ନାହିଁ ।

—ସାତ—

କିନ୍ତୁ ଦୁଇମାସ ବି କଟିନାହିଁ; ରାମକାଯୀ ପୁଣି ବନ୍ଦୀ ହେଲା।

ମଣିଷଙ୍କ କାମ ଦେଖି ସେ ଚିଡ଼ି ଯାଇଥିଲା; ମଣିଷଙ୍କ ଉପରେ ତାର ବଡ଼ ଘୃଣା ଆସିଯାଇଥିଲା। ପୁଣି ସେହି ମଣିଷଙ୍କ ହାତରେ ସେ ବନ୍ଦୀ। ହାଇରେ ମନ୍ଦକପାଳ! କଥାରେ ତ ଅଛି—

"ଯାହା କରିବେ ସାଇଁ,
ତାହା କାହାରି ହାତରେ ନାହିଁ।"

ତାହାର ତ ବନ୍ଦୀହେବା ଯୋଗ ଅଛି। ସେ କଥା ବା କିଏ ଅନ୍ୟଥା କରିବ?

ରାମକାଯୀ ଭାବିଥିଲା, ଏ ଲୋକଗୁଡ଼ାକ ତାକୁ ଧରିନେଇ ପୁଣି ନଚାଇବେ। ମାତ୍ର ତା ହେଲା ନାହିଁ। ସେମାନେ ଆଉ କେତେଗୁଡ଼ାଏ ମାଙ୍କଡ଼ ବି ଧରିଥିଲେ। ସେ ସମସ୍ତଙ୍କୁ ପିଞ୍ଜରାରେ ଭରତି କରି ଆଣିଲେ, ଅନ୍ୟ ଲୋକଙ୍କୁ ବିକିଦେଲେ।

ମାଙ୍କଡ଼ଗୁଡ଼ିକ କେତେବେଳେ ରେଲଗାଡ଼ି ବା କେତେବେଳେ ଜାହାଜରେ ବସି ବହୁତ ଦୂର ଦେଶକୁ ଗଲେ। ତାପରେ କିଏ ଯେ କୁଆଡେ ଗଲେ, ରାମକାଯୀ ତା କିଛି ହେଲେ ଜାଣେ ନାହିଁ। ସେ ଏକାକୀ ଆସି ଏ ଚିଡ଼ିଆଖାନାରେ ପହଞ୍ଚିଲା।

ସେ ଦେଖିଲା, ଚିଡ଼ିଆଖାନାରେ ଏକା ସେ ନାହିଁ। ସେଠାରେ ଆଉ କେତୋଟି ଜନ୍ତୁ ବି ଅଛନ୍ତି। ସେଥିରୁ କେତେକଙ୍କୁ ସେ ଚିହ୍ନେ, କେତେ ଜନ୍ତୁଙ୍କୁ ଚିହ୍ନେ ନାହିଁ।

ସେ ଚିଡ଼ିଆଖାନାରେ ରାମକାଯୀ ଦୁଇଟି ବର୍ଷ ରହିଲା। ତାପରେ ପଡ଼ିଲା ବିପଦ; ସେଇ ମଣିଷଙ୍କ ଆଡୁ ବାଦ।

ଯୁଦ୍ଧର ଘନଘଣ୍ଟା ସମୟ । ଦୈବଯୋଗ ତ । ଦିନେ ଶତ୍ରୁପକ୍ଷର ଗୋଟାଏ ଉଡ଼ାଜାହାଜ ଆସି ସେ ସହରରେ ବୋମା ପକାଇଲା । କେତେ ଘର ଭାଙ୍ଗିଲା, କେତେ ଲୋକ ମଲେ । ଯାହା ହେବାର ତ ହେଲା, ଚିଡ଼ିଆଖାନା ଉପରେ ଯାହା ବୋମା ପଡ଼ିଲା । ବାପ୍‌ରେ ସେ କି ଶବ୍ଦ ! କାନରେ ଅତଡ଼ା ପଡ଼ିଗଲା । ସାଙ୍ଗେସାଙ୍ଗେ ବୋମାମାଡ଼ରେ ସାପ ତିନିଟା ତାଙ୍କ ସର୍ପଲୀଳା ଶେଷ କଲେ; ବୁଢ଼ାବାଘଟା ପାଗଳ ହୋଇଗଲା, ଗୋଟିଏ କୁମ୍ଭୀର ଖଣ୍ଡିଆ ଖାବରା ହେଲା ।

ଅନ୍ୟ ପଶୁଗୁଡ଼ାକ ସୁବିଧା କରି ଛତ୍ରଭଙ୍ଗ ଦେଲେ । ଆମ ରାମକାଯୀ ବି ।

ତାର ଜଞ୍ଜିରଟା ହଠାତ୍ ଛିଡ଼ିଗଲା । ସେ ବୋମାମାଡ଼ରେ ଛିଟିକି ଖଣ୍ଡେ ଦୂରରେ ଯାଇ ପଡ଼ିଲା । କିଛିବେଳ ଅଚେତ ହୋଇଥିଲା । ଯେମିତି ଟିକିଏ ଚେତା ଆସିଛି, ସାଙ୍ଗେସାଙ୍ଗେ ମାରିଲା ଗୋଟାଏ ଡିଆ ଯେ, ଯାଇ ଗଛଉପରେ । ସେଠାରେ ତ ଆଉ ବେଶୀ ଗଛ ନ ଥିଲା । ଗଛରୁ ଡେଇଁଲା ରାସ୍ତାଉପରକୁ । ତାପରେ ପବନଯୋଗରେ ଏକମୁହାଁ ଧାଇଁଲା ।

ସେ ଖୁବ ବେଗରେ ଦଉଡ଼ୁଥାଏ, ଏଣେ ମନେମନେ ଭାବୁଥାଏ— ଯେତ୍, ବୋମା ଫୋମା ପଡ଼ିଲେ ଆଉ ମୁଁ ନ ରହେଁରେ ବାବା ।

ସେ ମନଇଚ୍ଛା ଦଉଡ଼ିଲା । ଦଉଡ଼ି ଦଉଡ଼ି କ୍ଳାନ୍ତ ହୋଇପଡ଼ିଲା । ଏଣେ ଭୋକରେ ପେଟ ଜଳିଲାଣି ।

ରାସ୍ତା କଡ଼ରେ ବସି ଟିକିଏ ବିଶ୍ରାମ ନେଲା । ଚିଡ଼ିଆଖାନାରେ ବେଶ୍ ମଉଜରେ ଥିଲା ସେ । ଠିକ୍ ସମୟରେ ଖାଇବା ଜିନିଷ ଆସି ପହଞ୍ଚି ଯାଉଥିଲା । ଏତେ ଧାଁ । ଧପଡ଼ କରିବାକୁ ପଡ଼ୁ ନ ଥିଲା । କାହିଁକି ତାକୁ ଦୁର୍ବୁଦ୍ଧି ଘୋଟିଲାଟି !

ସାଙ୍ଗେସାଙ୍ଗେ ବୋମା କଥା ମନେ ପଡ଼ିଗଲା । ସେ ଭାବିଲା—ନାଁରେ ନାଁ, ବୋମା ଯେଉଁଠି, ସେଠି କି ବାନର ରହନ୍ତି ? ରହିଲେ ରହିବେ ନର ।

ସେ ଦେଶରେ ତ ମାଙ୍କଡ଼ ନ ଥାନ୍ତି । ସମସ୍ତେ ବି ମାଙ୍କଡ଼ ଦେଖି ନାହାନ୍ତି । ତେଣୁ ଯେ ତାକୁ ବାଟରେ ଦେଖେ, ସେ କାବା ହୋଇଯାଏ । 'ଆହା; କାହାର ପୋଷା କଣ୍ଟାଏ ।' କେତେ କଏ ତା ପିଛା ଧରନ୍ତି; ମାତ୍ର ସେ ଖୁବ୍ ସାବଧାନ । ଲାଙ୍ଗୁଡ଼କୁ ଉପରକୁ ଟେକି ଯୋରରେ ଧାଏଁ । ନ ହେଲେ ଦାନ୍ତ ଦେଖାଇ ଗୋଡ଼ାଇ ଆସେ—ଖେଁ କର୍ ଖେ ।

ସେ ମନେମନେ ଭାବେ, "ଆଉ ଏ ମଣିଷଗୁଡ଼ାକଙ୍କ ପାଲରେ ପଡ଼ିବ ? ନାରେ ନା । ଏମାନଙ୍କ ପାଖରେ ରହି ବହୁତ ଦହଗଞ୍ଜ ହେଲଣି; ଏମାନଙ୍କୁ ଭଲରୂପେ ଚିହ୍ନି ଗଲଣି । ଏମାନେ ବଡ଼ ନିଷ୍ଠୁର, ନିର୍ଦ୍ଦୟ । ବଣର ବାଘ ସିଂହଠାରୁ ବି ବଳି ହିଂସୁକ ।"

---

— ଆଠ —

ରାମକାର୍ଯୀ ବୁଲିବୁଲି ଯାଇ ଗୋଟାଏ ବଜାରରେ ପହଞ୍ଚିଲା । ସେତେବେଳକୁ ଭୋକରେ ପେଟ କଁ କଁ ହେଲାଣି । ସହରରେ ବା ସେ ଖାଇବ କଅଣ ? ବାଟଘାଟରେ ତ ଆଉ ଖାଇବା ଜିନିଷ ପଡ଼ିରହି ନାହିଁ । ପୁଣି ଏ ଲମ୍ବା ଲାଞ୍ଜଟା ନେଇ ସେ ବା କାହାକୁ ଖାଇବା ଜିନିଷ ମାଗିବାକୁ ଯିବ ?

ପୁଣି ହାତ ପତାଇ ମାଗିବ ବା କପରି ? ନିହାତି ଲାଜ କଥା । ଅପମାନ କଥା । ଅସଭ୍ୟ ମନୁଷ୍ୟ ସିନା ପର ପାଖରେ ନଇଁନ ହୋଇ ହାତ ପତାଇ ମାଗେ । ସେ ତ କେବେହେଲେ ନିଜ ପାଇଁ କିଛି ମାଗି ଶିଖି ନାହିଁ । ଯାହା ମାଗୁଥିଲା, ତାହା ପର ପାଇଁ; ତା ମୁନିବ ଓକିଲ

ପାଇଁ । ସେ ତ ସେତେବେଳେ ମାଗୁ ନ ଥିଲା । ନକ ଖେଳ ଦେଖାଇ, ସେମାନଙ୍କୁ ଖୁସି କରି ପଇସା ଆଦାୟ କରୁଥିଲା ।

ସେଇ ପଇସା ଦେଇ କେଲା ଖାଦ୍ୟପଦାର୍ଥ କିଣି ଆଣୁଥିଲା । ରାମକାପୀ ତା ତା ପାଇଁ କଅଣ କିଣନ୍ତା । ମାତ୍ର କିଣିବ କିପରି ? ପାଖରେ ତ ପଇସା କଉଡ଼ି ନାହିଁ । ପୁଣି ରେଶନ କାର୍ଡ଼ ମଧ୍ୟ ନାହିଁ । ମହା ମୁସ୍କିଲ !

ଯୁଦ୍ଧବଜାର; ଜିନିଷ କିଣିବା ପାଇଁ ସମସ୍ତଙ୍କୁ ରେଶନ କାର୍ଡ଼ ଦିଆଯାଇଛି ।

ଯାହାହେଉ, ଶେଷରେ ଗୋଟାଏ ଫଳ ଦୋକାନ ତା ଆଖିରେ ପଡ଼ିଲା । ଦୋକାନୀ ସକାଳୁ ଉଠି ଦୋକାନଟି ସଜାଉଛି । କଦଳୀ



ଫେଣାଟିଏ ଟାଙ୍ଗିଦେଇ ଭିତରୁ ଲିଚୁ ଡାଲା ଆଣିବାକୁ ଯାଇଛି । ଦୋକାନରୁ ସଉଦା କିଣିବାକୁ ଧଡ଼ିବାନ୍ଧି ଗ୍ରାହକ ଠିଆ ହୋଇଛନ୍ତି ।

ଲୋକଙ୍କପରି ଧୈର୍ଯ୍ୟ ଧରି ଠିଆହୋଇ ରହିବା ତାହାର ତ ସ୍ୱଭାବ ନୁହେ । ସେ ମାଇଲା ଏକ ଡ଼ିଆଁ ଯେ, ଯାଇ ସମସ୍ତଙ୍କ ଆଗରେ । କିଛି କୁହାବୋଲା ନାହିଁ, କଦଳୀ ଦାମ୍ କେତେ ପଚାରିବାକୁ ନାହିଁ, ଖପ୍ କରି କଦଳୀ ପେଣାଟି ଧରି ଭାଗେ । ସଉଦା କରିପାରିଚି ବୋଲି ସେ ଭାରି ଖୁସି । ଏଣେ ଦୋକାନରେ ହଇଚଇ କାଣ୍ଡ । ସତେ ଅବା ଗୋଟାଏ ବୋମା ପଡ଼ିଗଲା ! ଦୋକାନୀଟି ହଠାତ୍ ଦୋକାନରେ ଗୋଟାଏ ଲଙ୍ଗୁଳ ଥିବା ଅଭଦ୍ର ଗରାଖ ଦେଖି ମୂର୍ଚ୍ଛା ହୋଇଗଲା ।

ମାଙ୍କଡ଼କୁ ଦେଖି ଲୋକେ ଆଉ ସଉଦା କରିବେ କଅଣ ? ତା ପଛରେ ଗୋଡ଼ାଇଲେ । ଗୋଟାଏ କୁକୁର ବି କୁଆଡେ ଥିଲା, ତା ପିଛା ଧରିଲା । ସେଇଟା ଏମିତି ଗୁଣ୍ଡା ଯେ, ଲୋକ ରହିଗଲେ ବି ସେ ରହିଲା ନାହିଁ । ରାମକାଯୀ ପଛେପଛେ ଗୋଡ଼ାଇଥାଏ । ଖାଲି ଯେ ଗୋଡ଼ାଇଲା ତା ନୁହେଁ; ଭୋ ଭୋ ଡ଼ାକ ବି ଛାଡ଼ୁଥାଏ । ରାମକାଯୀ ଦୁଇପାଟି ଦାନ୍ତ ଦେଖାଇ ଯେତେ ଖେଁ ଖାଁକରି ଖେଁ ହେଲେ ବି ସେ ଡରିଲା ନାହିଁ ।

ରାମକାଯୀ ଆଗେ ଆଗେ ଦଉଡ଼ୁଥାଏ । ସେତେବେଳେ ମନରେ ଭାବୁଥାଏ– ଚନ୍ଦ୍ରଆଖାନାରେ ଅନ୍ତତଃ ଏ ଜଞ୍ଜାଳ ନ ଥିଲା । ସେଠାରେ କେଡ଼େ ସୁଖରେ ମୁଁ ନ ଥିଲିଟି ! କାହିଁକି ବୋମା ପଡ଼ିଲା ? ମୋତେ ଏ ଦୁର୍ଯୋଗ ଘଟିଲା କାହିଁକି ?

ଆଗରେ ଗୋଟାଏ ପାଚେରୀ ଦେଖି ସେ ତା ଉପରକୁ ଚଢ଼ିଗଲା । କୁକୁର ବି ଛାଡ଼ିବା ଜନ୍ତୁ ନୁହେ । ସେ ମାଇଲା କୁଦା – ରାମକାଯୀ ଗୋଡ଼କୁ ଧରେ କି ନ ଧରେ । ରାମକାଯୀକୁ ହଠାତ୍ ଗୋଟାଏ ବୁଦ୍ଧି ଦିଶିଗଲା । ସେ ହାତରେ ଧରିଥିବା କଦଳୀ ପେଣାରେ କୁକୁର ମୁହଁରେ ଏତେ ଯୋରରେ ଗୋଟିଏ ପାହାର କଷିଦେଲା ଯେ, କୁକୁର ତଳେ ପଡ଼ିଗଲା । ଆଉ କି ସେ

ମାଙ୍କଡ ପିଛା ଧରୁଛ ? ପଛ ଦୁଇଗୋଡ଼ ସନ୍ଧିରେ ଲାଙ୍ଗୁଡ଼ ଯାକ ସାହସର ସହିତ ପୃଷ୍ଠଭଙ୍ଗ ଦେଇ ଆସି ଖାଉନ୍ଦ ଘରଭିତରେ । ଆସିଲା-ବେଳେ ଥରେଥରେ ପଛକୁ ଚାହିଁ ଦେଉଥାଏ—ମାଙ୍କଡ କଦଳୀପେଣା ଧରି ପଛରେ ଗୋଡ଼ାଉଚି କି ? ମନେମନେ ଭାବୁଥାଏ—ନା ନା, ଏ ବୀରତ୍ୱ ମୋର ଦରକାର ନାହିଁରେ ବାବା !

ଆମ ରାମକାଯୀ ବର୍ତ୍ତମାନ ନିଶ୍ଚିନ୍ତ । ସେ ପାଚେରୀ ଉପରେ ବସି ମନମଉଜରେ କଦଳୀପେଣାଟି ଖାଇଲା । ବିଶ୍ରାମ ନେଉନେଉ ଟିକିଏ ଘୁମାଇପଡ଼ିଲା ।

———

—ନଅ—

ସେଠାରେ ଗୋଟିଏ ପିଲା କାମ କରୁଥିଲା । ମାଙ୍କଡଟି ପୋଷିବାକୁ ତାର ଭାରି ଇଚ୍ଛା । କୁହା ନାହିଁ, ବୋଲା ନାହିଁ; ଗୋଟାଏ ମାଙ୍କଡ଼ ଆସି ତା ପାଚେରୀ ଉପରେ । ଏ ଠାକୁରଙ୍କ ଦୟା ନୁହେ ତ ଆଉ କଅଣ ?

ପିଲାଟିର ନାମ ସପନ । ସେ ଚୁପ୍ ଚୁପ୍ ଯାଇ ଗାମୁଛାକାନିଟା ମାଙ୍କଡ଼ ଉପରକୁ ପକାଇଦେଲା । ରାମକାଯୀ ପିଲାର ରଙ୍ଗଢଙ୍ଗ ଦେଖି ଆଉ ପଳେଇଗଲା ନାହିଁ । ସପନ ତାକୁ ଧରି କାନ୍ଧରେ ବସାଇଲା, କେତେ ଗେଲ କଲା; ମୁଣ୍ଡ ପିଠି ଆଉଁସିଦେଲା, ତାକୁ ନେଇ ଘରକୁ ଗଲା ।

ରାମକାଯୀ ମନେମନେ ଭାବିଲା, "ଏଥରକ ରକ୍ଷା ମିଳିଲା । ଆଉ ଖାଇବା ଚିନ୍ତା ମୋତେ କରିବାକୁ ପଡ଼ିବ ନାହିଁ, କି ଦୋକାନରୁ ଫଳ ଆଣି ହଟହଟା ହେବ ନାହିଁ ।"

ଘରେ ଆଈ ବୁଢ଼ୀ ଥାଏ । ସପନ ମାଙ୍କଡ଼ଟାଏ ଆଣିଥିବା ଦେଖି ସେ ତାତିଉଠିଲା । ମାତ୍ର କଅଣ ବା କରିବ ? ନାତି ସଉକରେ ଆଣିଛି ଯେ । ମାଙ୍କଡ଼କୁ ତଡ଼ିଦେଲେ ନାତି ମନରେ ଦୁଃଖ ହେବ ।

ଆଇ ଖାଇବସିଥିଲା । ଖଣ୍ଡେ ରୁଟି ପାଟିରେ ପୂରାଇଚି କି ନାହିଁ, ରାମକାଯୀ ଖପ୍ କରି ଡେ଼ଇଁ ପଡ଼ି ବାକି ରୁଟିତକ ଧରି ପଳାଇଗଲା । ଖଣ୍ଡି ଦୂରରେ ବସି ଖାଇଲା ।



ଆଈ ତ ଏହା ଦେଖି କାବା । ସେ କହିଲା—ମୋ ପାଟିକୁ ଏ ଗାଁରେ ସବୁ ମଣିଷ ଡରନ୍ତି; ଛାରି-ଏ ମାଙ୍କଡ଼ଟା ଡ଼ରୁନାହିଁ ? ଏହାର ସାହସ ତ କମ ନୁହେଁ ? ଏ ତ ଗୋଟାଏ ଡାକୁ ।

ପରଦିନ ସପନ ବଜାରକୁ ଯାଇଚି । ବେଳ ଉଣ୍ଡି ରାମକାଯୀ ତଆ ମାରି ଆସି ପୁଣି ରାସ୍ତାରେ ହାଜର । ଟିକିଏ ପଦାରେ ହାଉଆ ଖାଇ ଆସିବାକୁ ତାହାର ମନ ହେଲା କି କଅଣ । ନ ହେଲେ ବଜାରରୁ କିଛି ସଉଦା କରିବାକୁ ମନେ ପଡ଼ିଯାଇଥିବ—ଅବଶ୍ୟ ପଇସା ଦେଇ ନୁହେଁ; ସେମିତି—କାଲପରି ।

ବୁଲୁବୁଲୁ ଅପଜନବୁଢା ହାବୁଡ଼ରେ ସେ ପଡ଼ିଗଲା । ବୁଢ଼ା ଗାଧୋଇ-ବାକୁ ଯାଉଥିଲା । ମାଙ୍କଡ଼କୁ ଦେଖି ଟିକଏ ଠିଆହେଲା । ମନେ ମନେ ଭାବୁଥାଏ, ଏ କି ଜୀବ ? କୁଆଡ଼ୁ ଆସିଲା ? ସ୍ୱର୍ଗରୁ ନା ପାତାଳରୁ ?

ବୁଢା ରାମକାର୍ଯୀକୁ ଚାହିଁ ବୋକାପରି ଠିଆ ହୋଇଥାଏ । ରାମକାର୍ଯୀ ବି ବୁଢ଼ାର ରୂପ ଭେକ ଦେଖି କାବା ।

ବୁଢ଼ା ରାମଦାର୍ଯୀ ଆଡ଼କୁ ହାତ ପତାଇ ଡାକିଲା, ଚୁ ଚୁ । ସତେ ଯେପରି ହାତରେ କିଛି ଜିନିଷ ଧରିଚି; ତାକୁ ଦେବ ବୋଲି ଡାକୁଚି ।

ଏଣେ ରାମକାର୍ଯୀ ବୁଢାକୁ ବଲବଲ ଚାହିଁଥାଏ । ସେ ଭାବୁଥାଏ—ଏ କି ଜନ୍ତୁରେ ବାବା ! ଏହାର ଲାଙ୍ଗୁଡ଼ ନ ଥିଲେ କଅଣ ହେବ, ମୋର ସାଙ୍ଗଭାଇ ନିଶ୍ଚୟ । ନ ହେଲେ ମୋତେ ଏଡ଼େ ଶରଧାରେ ଡାକନ୍ତା କାହିଁକି ?

ବୁଢ଼ା ଡାକିଲା, ଚୁ, ଚୁ-ଆସ୍ ପୁସ୍ । ପୁଣି ଡ଼ାକିଲା—ତୁ, ତୁ । ସେ ଜାଣେ, ଏ ବିରାଡ଼ି ନୁହେଁ କି କୁକୁର ବି ନୁହେ । ତେବେ କେଉଁ ଭାଷାରେ ଏହାକୁ ସମ୍ବୋଧନ କରାଯିବ , ତା ତ ତାକୁ ମାଲୁମ ନାହିଁ ।

ରାମକାର୍ଯୀ ଖଣ୍ଡିଦୂରରେ ବସି ବୁଢ଼ାର ଗୋଡ଼ଠାରୁ ମୁଣ୍ଡଯାଏ ନିରେଖୁଥାଏ ।

ଶେଷକୁ ବୁଢ଼ା ପକେଟରୁ ଖଣ୍ଡେ ମିଶ୍ରି ବାହାରିକଲା । ତାକୁ ଦେଖାଇ କହିଲା—ଆଜ୍ଞା, ହଜୁର; ଏତକ ପ୍ରସାଦ ସେବାକରି ମୋତେ କୃତାର୍ଥ କରନ୍ତୁ ।

ରାମକାର୍ଯୀ କହିଲା—ବେଶ୍ ବେଶ୍, ମୋର କିଛି ଆପତ୍ତି ନାହି । ନାହିଁ । ଅର୍ଥାତ୍ ମୋଟ ଉପରେ ସେ କିଛି କହିଲା ନାହିଁ । କାରଣ ମାଙ୍କଡ଼ ତ ଆଉ କଥା କହିପାରେ ନାହିଁ । ସିଧା ଯାଇ ବୁଢ଼ା ହାତରୁ ମିଶ୍ରି ଖଣ୍ଡିକ ଛଡ଼ାଇ ଆଣିଲା, ପାଟିରେ ପୂରାଇ କଡ଼ମଡ ଚୋବାଇଲା ।

ରାମକାର୍ଯୀ ମିଶ୍ରି ଖାଇ ଖୁସି; ଅପଜନ ବୁଢ଼ା ମିଶ୍ରି ଖୁଆଇ କୃତାର୍ଥ ।

ଦୁହିଁଙ୍କ ମଧ୍ୟରେ ବନ୍ଧୁତା ହୋଇଗଲା । କିମିଷିକ ଭିତରେ ମନ ମିଳିଗଲା ।

ବୁଢ଼ା ଅପଣା ତାକୁ କାନ୍ଧରେ ବସାଇ ଗାଧୋଇବାକୁ ଗଲା । ମନେ ମନେ ଭାବିଲା, ମୁଁ ଗାଧୋଇବା ସାଙ୍ଗେସାଙ୍ଗେ ଏଇଟାକୁ ବି ଗାଧୋଇ ଦେବି ।

ମାଙ୍କଡ଼ ବୁଢା କାନ୍ଧରେ ଘୋଡ଼ା ଚଢ଼ି ମଉଜରେ ଘୁମାଉଥାଏ । ସେତେବେଳେ ତାର ଆଗ କଥା ମନରେ ଖେଳଯାଉଥାଏ—ଚୈାକିପିଠିରେ ସେ କପର ବାବୁ ହୋଇ ବସୁଥିଲା ।

ନଈକୂଳେ ପହଞ୍ଚି ବୁଢ଼ା ମାଙ୍କଡ଼କୁ ଗାଧୋଇଦେବାକୁ ବସିଲା । ଆଦରରେ ବାସନା ସାବୁନ ଯେମିତ ତା ଦେହରେ ଲଗାଇ ଦେଇଛି, ସାବୁନ ପାଣି ତା ଆଖିରେ ଟିକିଏ ପଡ଼ିଗଲା । ଆଖି ଯାହା



ହୋଇଥିବ, ତା ତାକୁ ଜଣା । ସେ ହଠାତ୍ ଭୁଲି ବୁଢ଼ା ହାତକୁ ଜୋରରେ କାମୁଡ଼ିଦେଲା । ବୁଢ଼ା 'ବାପା ଲୋ, ମାଆ ଲୋ' ପାଟି କରୁଥାଏ; ସେ ଡ଼ିଆଁ ମାରି ସେଠାରୁ ପଳାଇଗଲା ।

ନଈକୂଳରେ ବହୁତ ଲୋକ ଗାଧୋଉଥିଲେ । କିଏ ତାକୁ ଦେଖିଛ, କିଏ ବା ଦେଖି ନାହିଁ । ସମସ୍ତେ ହାଁ ହାଁ ପାଟିକରି ଉଠିଲେ । କିଏ କହିଲା ଚୋର, କିଏ କହିଲା ବୋମା ପଡ଼ିଲା । ସେଠାରେ ମସ୍ତ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ପାଟିତୁଣ୍ଡରେ ଚୋରଆଡ଼ କମ୍ପିଗଲା ।

ଏ କାଣ୍ଡ ଦେଖି ରାମକାର୍ଯୀ ମନେ ମନେ ବିରକ୍ତ ହୋଇଉଠିଲା । ପୁଣି ରାସ୍ତା ଧରି ଦଉଡ଼ିବା ହିଁ ସାର ହେଲା ।

ତା ପଛରେ ଗୋଡ଼ାଇଲେ କେତେ ଟୋକା, କେତେ ଭେଣ୍ଡିଆ ଲୋକ; କେତେ ପୋଲିସ ।

ପୂର୍ବଦିନର କୁକୁରଟା ବି କିଛି ନ ଜାଣି ଗୋଡ଼ାଇଥିଲା । ମାଙ୍କଡ଼ ଯେମିତ ମୁହଁ ଫେରାଇ ତାକୁ ଚାହିଁଛି, ମୁରକିହସା ଦେଇ କହିଲା—ମୁହଁ ଦରକ ଛାଡ଼ିଗଲାଣି କି ?

କୁକୁର ବି ମାଙ୍କଡ଼କୁ ଦେଖିପାରିଲା । କାଲିର ମାଡ଼ କଥା ମନେ ପଡ଼ିଯିବାରୁ ତା ଗାଲଟା ବନ୍ଦି ଉଠିଲା । ସେ ମନେମନେ କହିଲା— ନାଇଁରେ ବାପା, ତୁ ତୋ ବାଟରେ ଯା, ମୁଁ ମୋ ବାଟରେ ଯାଉଛି ।

କୁକୁର ସନା ରହିଲା, ଏ ଅଦ୍‌ଭୁତ ଜନ୍ତୁ ମଣିଷଗୁଡ଼ାକ କଅଣ ମାଙ୍କଡ ମନକଥା ବୁଝିପାରୁଚନ୍ତି ? ସମସ୍ତେ ତା ପଛରେ ଗୋଡ଼ାଇଚନ୍ତି ।

ଖାଲି କଅଣ ଲୋକ ? ରାଜ୍ୟର ସବୁ ପୋଲିସ ଫଉଜ—ଲାଠିଧାରୀ ପୋଲିସ, ବନ୍ଧୁକଧାରୀ ପୋଲିସ, ଘୋଡାଚଢ଼ା ସୈନ୍ୟ । ଶହଶହ ହଜାର ହଜାର ସଂଖ୍ୟାରେ ଧାଇଁଛନ୍ତି—ସତେ ଯେପରି ଗୋଟାଏ ଭୀଷଣ ଯୁଦ୍ଧ ଲାଗିଯାଇଛି ।

ଗୃହୁଁ ଗୃହୁ ବଜାରରେ ବହୁତ ଭିଡ଼ ଜମିଗଲା । ସମସ୍ତେ ଭାବଲେ, ବୋଧହୁଏ ବୋମା ପଡ଼ଲା । ଯେ ରାମକାଯାଁକୁ ଦେଖି ପକାଇଲା, ସେ ଭାବଲା, ଏ କେଉଁ ଦେଶର ମଣିଷ ? ପଛରେ ଗୋଟାଏ ଲାଙ୍ଗୁଡ଼, ଦେହରେ ଧଲାଧଲା ସାବୁନ ଫେଣ, ପାଣି ସରସର ହୋଇ ବୋହି ପଡ଼ୁଚି । ଶତ୍ରୁ ପକ୍ଷର ଗୋଟାଏ ପଞ୍ଚମବାହିନୀ ନିଶ୍ଚୟ ହୋଇଥିବ ।

ରାମକାଯାଁ ଦେଖିଲା, ଆଉ ତ୍ରାହି ନାହିଁ । ସେ ବିକଳରେ ଡାକ ଛାଡ଼ିଲା—ତ୍ରାହି ମାଂ ମଧୁସୂଦନ; ଅର୍ଥାତ୍ ଖେଁ, ଖେଁ, ଖାଁ କର ଖେଁ ।

କୁଆଡୁ ଆସି ସପନ ସେଠାରେ ପହଞ୍ଚିଗଲା । ରାମକାଯାଁକୁ ଆଦରରେ ଧରିପକାଇ କୋଳ କଲା । ରାମକାଯାଁ ଏମଣିଷଗୁଡ଼ାକଙ୍କ ଦାଉରୁ ରକ୍ଷା ପାଇବା ପାଇଁ ତାହା ହିଁ ଖୋଜୁଥିଲା । ଖୁସିରେ ତା କାନ୍ଧରେ ବସିପଡ଼ି ଆଖି ବୁଜିଦେଲା ।

ବୁଢା ଅପନ ଲସରପସର ହୋଇ ସମସ୍ତଙ୍କ ପଛରେ ଦଉଡ଼ୁଥିଲା । ସେ ସେଠାରେ ପହଞ୍ଚି ତା ଖଣ୍ଡିଆ ହାତ ଦେଖାଇ କହିଲା—ସେ ମୋ ମାଙ୍କଡ଼; ଦେଖ, ମୋ ହାତ କାମୁଡ଼ି ପଳାଇଆସିଚି । ମୋ ମାଙ୍କଡ ମୋତେ ଦେଇ ଦେ ।

'ପଞ୍ଚମ ବାହିନୀ' ଧରାପଡ଼ିଯିବାରୁ ପୋଲିସ ଆଶ୍ୱସ୍ତ ହେଲେ । ଶାନ୍ତିରକ୍ଷା କରିବା ପାଇଁ ଯେ ଯାହା ସ୍ଥାନକୁ ଫେରିଗଲେ । ଲୋକମାନେ ମଧ୍ୟ ମୁହ ଶୁଖାଇ ଚାଲିଗଲେ । ଶେଷକୁ ରହିଲେ ଅପନ, ସପନ ଓ ରାମକାଯାଁ ।

ସପନ ଆଉ ଅପନ, ପିଲ୍ ଆଉ ବୁଢ଼ା—ଦୁହିଙ୍କ ଭିତରେ କଳି ଲାଗିଗଲା । ଏ କହିଲା, ମୋ ମାଙ୍କଡ଼; ସେ କହିଲ୍, ମୋ ବାନର ।

ଅପନ କହିଲ୍—ସେ ମୋ ହାତ କାମୁଡ଼ି ପଳାଇଆସିଚି ।

ସପନ ଜବାବଦେଲ୍—ତୋର ହୋଇଥିଲେ ତୋ ହାତ କାମୁଡ଼ନ୍ତା କାହିଁକି ?



ଏହି କଥା ବିଚାର କରିବାପାଇଁ ପଞ୍ଚାୟତ ବସିଲା । ପଞ୍ଚାୟତରେ ନିଷ୍ପତ୍ତି ହେଲ୍ ଯେ, ମାଙ୍କଡଟି ସପନର । ଅପନ ବୁଢ଼ା ମୁହଁ ଆମ୍ଭିଲା

କରି ଗାଧୁଆ କାମ ଶେଷ କରିବାକୁ ନଈକୂଳକୁ ଫେରିଗଲା । ସପନ ଖୁସିମନରେ ଘରକୁ ଆସିଲା । ତା କାନ୍ଧରେ ବସି ରାମକାଯୀ ନିଶ୍ଚିନ୍ତ ମନରେ ଘୁମାଉଥାଏ ।

———

—ଦଶ—

କିଛିଦିନ ଆଗେ ମୁଁ ସେ ଦେଶକୁ ଯାଇଥିଲି । ଦେଖିଲି, ସପନ ଘରେ ଆମ ରାମକାଯୀ ସୁନାପିଲାଟି ପରି ରହୁଚି । ସେ ଆଉ ଆଈବୁଢ଼ୀର ଖାଇବାଜିନିଷ ଛଡାଇ ନେଉ ନାହିଁ; ତେଣୁ ଆଈବୁଢ଼ୀ ତାକୁ ମାରି-ଗୋଡାଉ ନାହିଁ ।

ତା ମେଜାଜ୍ ବେଶ୍ ଥଣ୍ଡା ହୋଇଗଲାଣି । ଆଜିକାଲି ଦେଶ ବୁଲିବାକୁ ଆଉ ସେ ମନ କରୁନାହିଁ କି ବଜାରର ଧଉଦା କରିବାକୁ ଯିବାପାଇଁ ଚାହୁଁ ନାହିଁ । ଏପରି କି ଚିଡ଼ିଆଖାନାକୁ ଫେରିଯିବାକୁ ବି ତାର ଇଚ୍ଛା ନାହିଁ ।

ସପନ ସାଙ୍ଗରେ ଦେଖାହେଲା । ରାମକାଯୀ କଥା ପଚାରିବାରୁ ସେ କହିଲା, "ମାଙ୍କଡ଼ଟି ବଡ଼ ବୁଦ୍ଧିଆ । ତା ବଗଲାମୀ ସବୁ ଛାଡ଼ିଗଲାଣି । ମୁଁ ତାକୁ ତାଲିମ କରୁଚି । ଏଥରକ ନିର୍ବାଚନ ହେଲେ ସେ ଭୋଟପାଇଁ ଠିଆ ହେବ । ତାକୁ ଆସେମ୍ବ୍ଲିର ଗୋଟାଏ ସଭ୍ୟ କରିଦେବା ମୋର ଇଚ୍ଛା ।

ମୁଁ ମଧ୍ୟ ଅନୁମାନ କଲି, ଆମ ରାମକାର୍ଯୀ ଆସେମ୍ବ୍ଲିର ଗୋଟିଏ ସଭ୍ୟ ହେବାପାଇଁ ନିଜକୁ ତିଆରି କରୁଛି । ଖାଲି ସଭ୍ୟ କାହିଁକି, ଗୋଟାଏ ମନ୍ତ୍ରୀ, କିମ୍ବା ନ ହେଲେ ଗୋଟାଏ ଉପମନ୍ତ୍ରୀ ସେ ନିଶ୍ଚୟ ହେବ ।

( ଶେଷ ଅଂଶତକ ରୁଷଦେଶର
ଗୋଟିଏ ଗଳ୍ପର ଛାୟାରେ ଲିଖିତ )

———

ଆନନ୍ଦ ପ୍ରିଂଟିଂ ଓ୍ୱାର୍କସ୍, ତେଲେଙ୍ଗା ବଜାର, କଟକ-୯